# ଉତ୍ସର୍ଗ

ମୋ ଜନ୍ମମାଟିର ବରେଣ୍ୟ ବନ୍ଧୁ
ସ୍ୱର୍ଗୀୟ ପଣ୍ଡିତ ଗୋଦାବରୀଶଙ୍କ •
ପୁଣ୍ୟ ସ୍ମୃତି ଉଦ୍ଦେଶ୍ୟରେ······

କୃଷ୍ଣଚନ୍ଦ୍ର ତ୍ରିପାଠୀ



## ପଦେ—

ଓଡ଼ିଶାର ସୁପ୍ରତିଷ୍ଠିତ ଯଶସ୍ୱୀ କବି ଶ୍ରୀଯୁକ୍ତ କୃଷ୍ଣଚନ୍ଦ୍ର ତ୍ରିପାଠୀଙ୍କର "ଅମୃଲିପି" କବିତା ପୁସ୍ତକରେ ଏକଶ ଛଅଗୋଟି ଚତୁର୍ଦ୍ଦଶ-ପଦୀ କବିତା ସ୍ଥାନ ପାଇଅଛି । କବିତାଗୁଡ଼ିକ ୧୯୩୭ ମସିହାଠାରୁ ୧୯୫୭ ମସିହା ଭିତରେ ବିଭିନ୍ନ ସମୟରେ ଲେଖା । କବିଙ୍କର ଜୀବନ ଦର୍ଶନ ବହୁ କବିତାରେ ଆତ୍ମପ୍ରକାଶ କରିଥିବାରୁ ଏବଂ ତାଙ୍କ ଜୀବନର ବହୁ କ୍ଷୁଦ୍ର କ୍ଷୁଦ୍ର ଘଟଣା ଉପରେ କେତେ-ଗୁଡ଼ିଏ କବିତା ଲେଖାଯାଇଥିବାରୁ ପୁସ୍ତକର ନାମ 'ଅମୃଲିପି' ରଖାଯାଇଛି ।

ଆଶାକରୁ ଉତ୍କଳର ପାଠକ ପାଠିକାଙ୍କ ନିକଟରେ 'ଅମୃଲିପି' ଆଦୃତ ହୋଇପାରିବ । ଜୟନ୍ତୁ ଜଗନ୍ନାଥ ।

୪-୨-୫୮

ପ୍ରକାଶକ,
**କବି-କୁଟୀର**
ଶ୍ରୀମପୁର, ବାଣପୁର (ପୁରୀ)

ଦିଗ୍‌ବଳୟୁ ତଳେ ଉଇଁ ପାଟଳ ତପନ
ନିଭି ଯାଉ ଯେତେବାର ଅଛି ନିଭିବାର
ଲକ୍ଷକଳି ଝଡ଼ିପଡ଼ୁ ନହୋଇ ସୁମନ,
କାହିଁକି ଢାଳିବ ବସି ତପ୍ତଲୁହଧାର ?

—ଧୈର୍ଯ୍ୟଚନ୍ଦ, ନୈପାଳୀ



## ଆମେ ଜଣେ

ତୁମେ କିଏ ମୁହିଁ କିଏ କିଏ ଏଇମାନେ ?
ଏକା ଅଙ୍ଗ ଅବୟବ ଏକା ଆଶା ପ୍ରାଣେ ।
ଏକା ଅନୁଭବ ଏକା ସୁଖ ଦୁଃଖ ପ୍ରୀତି
ଏକଇ ମାଟିରେ ଆମ ସଭିଙ୍କର ସ୍ଥିତି ।
ଏକା ହସ ଫୁଟେ ଓଠେ, ଏକା ଲୁହ ଝରେ
ସଭିଏ ତ ଆମେ ଗଢ଼ା ଏକଇ ହାତରେ
ଏକଇ ଫୁଲର ଆମେ ସହସ୍ର ପାଖୁଡ଼ା
ଏକା ସୂତ୍ରେ ଗୁନ୍ଥା ଆମ ଜୀବନର ପ୍ରଭା
ତେବେ କାହିଁ କିମ୍ପା ଏତେ ମୁହଁ ମୋଡାମୋଡ଼ି ?
କିପାଇଁ ବନ୍ଧନ କାହିଁ ହୃଦ ଖୋଲାଖୋଲି ?
ଆମେ କୋଟି ସହସ୍ରର ରଶ୍ମି ମଧୁ ଗାନ
ପୃଥିବୀରେ ଭରୁଅଛି ନବ ନବ ପ୍ରାଣ ।
ଏଥିରେ ଆମର କେତେ ଗର୍ବ ଗୌରବ !
କିପାଇଁ ଅଛିନ୍ନ ଏଇ ପୁଣ୍ୟ ଅନୁଭବ !

— ଏକ —

## ବର ଦାନ

ହେ ଅନନ୍ତ ! ହେ ଅସୀମ ! ଦେଇଚ ଜନମ
ତୁମର ସୃଷ୍ଟିରେ ମତେ, ଅନନ୍ତ ବନ୍ଧନେ—
ବାନ୍ଧିଚ ଅନନ୍ତ ପ୍ରାଣେ ; କେମନ୍ତେ ଜୀବନ
ଭୁଲିବ କରୁଣା ତବ ଜନମେ ଜନମେ ।
ପ୍ରତି ପୁଷ୍ପ ପ୍ରତି ଫଳ ପ୍ରତି ଗୁଳ୍ମ ଲତା
ନର, ନାରୀ, ପଶୁ ପକ୍ଷୀ, କାନନ, ଭୂଧର,
ନଦ, ନଦୀ, ନୀଳ ନଭ—ସବୁରେ ମମତା—
ଝର ଅସେ ରହେଁ ମୁହିଁ ଯେତେ ଯେତେ ଥର !
ଯଭିଏ ସଭିଙ୍କ ତୁଲେ ଯୁକ୍ତ ଏକ ଜିଏ
ଦେବ’ କାହର ଯିବାକୁ ଗଣ୍ଡ ହୃଦୟ ସମ୍ମତ
ତେବେ କା ଉପରେ ମାନ ଅଭିମାନ କିଏ—
କରେ ନାହିଁ ? କି ସୁନ୍ଦର ତୁମ ସୃଷ୍ଟି ପଥ !
ଏ ପଥେ ପଥିକ ମତେ କଲ ଭଗବାନ
ଏ ଠହୁଁ ଅଧିକ କିବା ଅଛି ବରଦାନ ?

— ଦୁଇ —

ଅମୃଲ୍ୟ

# କେବେକି ପିବ ଫେର ?

ହସ ଖେଳ ଆନନ୍ଦର ବସୁନ୍ଧରା ପରେ
ହସି ଖେଳି ଚାଲିବି ମୁଁ ସବୁରି ସଙ୍ଗରେ ।
ସଭିଏ ମୋହର ସାଥି ପ୍ରାଣ ପ୍ରିୟତମ
ଭଲ ନୁହେ ଭଲ ନୁହେ କେହୁ ଏକଜଣ !
ବଷବର୍ ସେନେହରେ ସବୁରି ଅନ୍ତର—
ପରିସ୍ନାତ କରି ମୁହିଁ, ଚାଲିବି ସତ୍ୱର ।
ଦେଖିବି ସବୁରି ଓଠେ ଆନନ୍ଦର ହାସ
ଦେଖିବି ଅନନ୍ତ ଆଶା ଉତ୍ସାହ ଉଚ୍ଛ୍ୱାସ
ସବଳର ବୁକୁ ତଳ ଉଠୁଅଛି ଫୁଟି
ତହିଁରେ ସରାଗେ ଯିବ ଏ ଜୀବନ ଛୁଟି !
ବିରାଟ ବିଶ୍ୱର ପ୍ରତ ଧୂଳିକଣା ସହ
ମୁଁ ଚାହେଁ ଜୀବନଦୋଳା ପ୍ରାଣ ପରିଚୟ !!
ଚତୁର୍ଦ୍ଦିଗେ ଯେ ଅନନ୍ତ ରହୁଅଛି ଘେରି
ନ ପିଇ ସବୁଠୁ ସୁଧା କେବେକି ପିବ ଫେରି !!!

— ତନ୍ନ —

## ଡ଼ାକ

କେଉଁ ଦେଶ ପଥିକ ମୁଁ କେଉଁ ଦେଶେ ଯାଏ ?
ଅଲକ୍ଷ୍ୟ ମୋ ଯାତ୍ରା ପଥେ ସୁଖ ଦୁଃଖ ପାଏ ।
ହସେ ଖେଳେ କାନ୍ଦେ କେତେ ବୁଝେନା ତ ଅସି !
ପଥେ ପଥ ଜନ ପ୍ରାଣୀ ପ୍ରିୟ ପ୍ରତିବାସୀ
ସ୍ଥଳଚନ୍ଦ୍ର ଉରଭରେ କିବା ଲକ୍ଷ୍ୟ ଧରି !
ଉପରେ ଅନନ୍ତ ନଭ ତଳେ ଅଛି ପଡ଼ି
ସୀମାହୀନ ବସୁନ୍ଧରା, ଗିରି ବାଲ ବନ—
ନୀଳିମାରେ ଭରି ନିତ୍ୟ ଗମ୍ଭୀର ଗାହନ !
ଯାଏଁ ମୁଁ ଝୁଲିଛି ନିତ୍ୟ ଚକ୍ରବାଳ ଫେରି
ଯେତେ ଯାଏ ସେତେ ଦୂରେ ଦୂରେ ଯାଏ ସେହି !
କିମ୍ପା ଆସିଥିଲି ଏଥି କାହାର ଇଙ୍ଗିତେ ?
କାହାର ସୁବର୍ଣ୍ଣ ବୀଣା ମୋହନ ସଙ୍ଗୀତେ
ଯାଏ ମୂର୍ଚ୍ଛି ଦୂରେ ଦୂରେ ; କାହା ନିତ୍ୟ ଡ଼ାକେ
ଝୁଲିଛି ବିଶାଳ ସୃଷ୍ଟି ମଜନେ ନିବାକେ ।।

— ଗ୍ଲଭ —

# ଯାତ୍ରୀ ଓ ଯାତ୍ରା

ଆଣି ଆଜ ଆନନ୍ଦର ସୁନେଲି ସପନେ
ବଞ୍ଚି ମୁଁ ରହିଛି ଏଇ ଅନନ୍ତ ଭୁବନେ ।
ସୀମାହୀନ ବିପଦର ଯେ ଝଡ ତୋଫାନ—
ତୁଳେ ମୁହିଁ ଲଢିଅଛି ନିସ୍ତୃତ ସଂଗ୍ରାମ
ଚାଲିଛି ମୁଁ ବାଟ କାଟି ଲଭେ ନାହିଁ ଡର
ଦୁର୍ଦ୍ଦମ ଅଭାବ ଯେବେ ପଥେ ଅଛି ପଡ଼ି ।
ଅସୀମ ବେଦନେ ଯେବେ ଲୁହ ଅଛି ଝରି,
ଦେଇଛି ନୟନୁ ପୋଛି ମୁହିଁ ବୀର ପରି !
ଘାତ ପ୍ରତିଘାତ ଯେବେ ଆସି ବାରବାର
କରିଅଛି ହଇରାଣ ଦେଖାଇ ଦୁର୍ବାର—
ଟଳଇ ମତେ, ଯାଇନି ମୁଁ ମାଇନି ମୁଁ ଦବି
ଚାଲିଛି ମୁଁ ବୈଶାଖର କିବା ତପ୍ତ ରବି !
ଏ ମହା ବିଶ୍ୱର ପ୍ରତି ରେଣୁବିନ୍ଦୁ ତଳେ
ନୀ ମଧୁ ସମ୍ପଦ ମୋତେ ଅକୁଳିତ କରେ !!

ଅଞ୍ଜଳି

# କର୍ମ ଭୂମି

ବିଶାଳ ଧରଣୀ ପରେ ଦେଖ ଲୋ ସୁନ୍ଦରି !
କେମନ୍ତେ କର୍ମର ତେଜ ଦିବସ ଶର୍ବରୀ
ଲାଗିଅଛି ପରମ୍ପରା । ନାହିଁ ଅବସାନ
କ୍ଷୁଦ୍ର ପିପିଲିକାଠାରୁ ମଣିଷ ମହାନ
ବଳ କଳ ବୁଦ୍ଧି ସ୍ଥଳ ଲାଗିଛନ୍ତି କାମେ
ବିଶ୍ରାମର ଭୂମି ଏହୁ ନୁହେ ହେଲେ ଧାମେ !
ଅଜ୍ଞ ଯାରେ ଚଞ୍ଚୁ ପୁଟେ ଖାଦ୍ୟ ଆହୁଁ ଅଣ
ବିହଗୀ ଶାବକେ ତାର ଖୁଆଏ ସେ ପୁଣି—
ଦୁର୍ବଳସ୍ତ ଥରପାରେ ବୁଲି ପକ୍ଷପାତେ
ପୂରାଏ ଆପଣା ପେଟ, ପ୍ରତି ଜୀବ ପ୍ରାଣେ
କେମନ୍ତେ ବାଧାତା ଦେଇ ସାଧନାର କଣା,
ଦେଖଇ ସୁଦୂରୁ ଏଇ ଖେଳ ଅକଳନା
କର୍ମର ମୋହନ ଖେଳ ଚତୁର୍ଦ୍ଦିଗ ଭର
ରଖିଛି ସୃଷ୍ଟିକୁ ନିତ୍ୟ ଉଦ୍‌ଜୀବିତ କରି !!

## ଆଉ ସ୍ଥାନ କାହିଁ ?

ମୋର ବଡ଼ ସ୍ୱଗତୁଏ ସେଇଁଠି ମଣିଷ
ମଣିଷକୁ ଭଲ୍ ପାଏ ନାଇଁ ଅହର୍ନିଶ !
କି ସୁନ୍ଦର ପୃଥିବୀ ଏ ବାଲ୍‌ପଦା ଧରି
ଧରି ଶ୍ୟାମ ଅରଣ୍ୟାନୀ ଉନ୍ନତ ଶିଖରୀ,
ନୀଳକାନ୍ତ ଉର୍ମି ତୋଳି ନାଚଇ ସାଗର
ରବି ଶଶୀ ତାରକାରେ ଶିରେ ନୀଳାମ୍ବର
ରଚଇ ଅନନ୍ତ ମାୟା; ପୁରପଲ୍ଲୀ ଗ୍ରାମ
ନଗର ସହର କେତେ ଧରି ଲକ୍ଷ ପ୍ରାଣ—
ଅନନ୍ତ ଆକାଂକ୍ଷା ଭରା, ଲୀଳା ଉଠେ ଭରି ।
ନିଜକୁ ନିଜର କରି ସବୁରେ ଫଟଇ.
ଗାଇବାକୁ ଜୀବନର ସୀମାହୀନ ଗାନ
କାହିଁକି କୁଣ୍ଠିତ ହେବ ମଣିଷର ପ୍ରାଣ ?
ଛାଡ଼ିଦେଲେ ଏଇ ମାଟି ଆଉ ସ୍ଥାନ କାହିଁ ?
ପ୍ରାଣର ଈପ୍‌ସିତ ମଧୁ ପାଇବାର ପାଇଁ !

— ସାଭ —

## ତ୍ୟକ୍ତ ପ୍ରାସାଦ

ଅସ୍ପନ ଅପୂନ ମୋର ତଳେ ଅବସାଦ
ଦେଖି ଜୀର୍ଣ୍ଣ ପରିତ୍ୟକ୍ତ ଏ ରାଜପ୍ରାସାଦ !
ମଣିଷର ପ୍ରାଣଦୋଳା ମୋହନ ଅନ୍ତର
ନଥିଲା ନଥିଲା ଏଥି ତିଳେକ ମାତର !
ମଣିଷର ବ୍ୟଥା ଏଥି ବୁଝିବାର ପାଇଁ
ତା' ନୟନ ପ୍ରାନ୍ତୁ ଲୁହ ଝରୁଥିଲା ନାହିଁ !
ହେବା ପାଇଁ ମଣିଷର ସଖା ବନ୍ଧୁ ସାଥି
ନିଭୃତ ଚିନ୍ତିତ ନାହିଁ ଥିଲା ତାର ଛାତି !
ମଣିଷର ମୁଣ୍ଡ କାଟି କାଟି ତା' ଅନ୍ତର
ମୁଣ୍ଡ ଟେକି ଉଠିଥିଲା ଏ ସୌଧ ଶିଖର !
କେମନ୍ତେ ରହିଲା ଚର ତୀର୍ଥ ଭୂଇଁ ସମ ?
ମାଟିର ନରକ ଏ ଯେ ଭୀଷଣୁ ଭୀଷଣ !
ମଣିଷ ଲୁହର ବାଣୀ ବୁଲିଚି ଯେ ଦଳି
କେମନ୍ତେ କହିବ ତା'ଠି ପ୍ରାଣ ଅଛି ବଳି ?

# କେଉଁଠି

କେଉଁଠି ହସୁଚି କିଏ ନର୍ତ୍ତକର ହାସ !
କେଉଁଠି କାନ୍ଦୁଚି କିଏ ପ୍ରାଣଦୋଳା ଶ୍ୱାସ !
କେଉଁଠି ଗୁଲୁଚି କିଏ ମୁଖରିତ କରି
ଅନନ୍ଦର କଳ ତାନେ ଦିବସ ଶର୍ବରୀ !
କେଉଁଠି କେ ସ୍ୱପ୍ନମାୟା ଦଶି ଦଶି ଭରି
ଅମୃତର ମଧୁଧାର ଅଣୁଚି ଅହ୍ନର !
କେଉଁଠି କେ ଫୁଟାଉଚି ଜୀବନର ଫୁଲ
ବର୍ଣ୍ଣ ଦେଇ ଗନ୍ଧ ଦେଇ ଅମୂଲ ଅତୁଳ !
ସାଗର ଉଚ୍ଛ୍ୱାସ ପରି ଖିଆ ଉତ୍ତଳାର
କେଉଁଠି ଜୀବନ ସ୍ରୋତ ଅକୁଳ ଅଧୀର !
ଅନନ୍ତର ଅସୀମର ମିଶିଯିବା ପାଇଁ
ସବୁ ସ୍ୱାର୍ଥ ସବୁ କ୍ଷୁଦ୍ର ଦୂରେ ଫିଙ୍ଗି ଦାହୁଁ
କେଉଁଠି ଏ ସବୁ ଅଛି କହ ମତେ କହ ?
ସେ ସବୁରେ ଢଳି ହେବ ମୁଁ ଆନନ୍ଦମୟ !

— ନଅ —

ଆନ୍ତଲିପି

## ମାନବ

ହେ ମାନବ ! ତୁମ୍ହେଁ ଥରେ ତୁମ୍ହେଁ ବଳ ବଳି
କଏ ତୁ ଅସିରୁ ଧରା ପୃଷ୍ଠେ ଅବତର
ସୀମାହୀନ ଶକ୍ତି ନେଇ ମହା ବିଧାତାର
ନିଜକୁ ପଚ୍ଛର ନିଜେ କେତେ ଅଧିକାର —
ପାଇଛୁ ଏ ଧରଣୀରେ, ତୋହଠାରୁ ବଳି
ଧରାରେ ବିରାଟ କର ସ୍ରଷ୍ଟା ନାହିଁ ଗଢ଼ି
କାହାରେ ଅପଣା ହାତେ । ନନ୍ଦୁ ଏ ଧରାର
ପ୍ରାଣ ଦାନୀ ରୂପ ଦାନୀ ଜୀବନ ଆଧାର ।
ସଂଗ୍ରାମର ବିଭୀଷିକା, ଶତ ରକ୍ତପାତ ।
ଶାନ୍ତି, ମୈତ୍ରୀ, ସୌଭାଗ୍ୟର ମୂଳ ତୋର ହାତେ
ଯାଦୁକର ଯଷ୍ଟିସମ ସେତେବେଳେ କାମ କରେ !
ଧରଣୀର ଭାଗ୍ୟ ତୋର ତୋହରି ହାତରେ
ବନ୍ଦୀ ନା କି ? ଏ ଧରଣୀ ରହିଅଛୁ ତୁହିଁ
ସତତ ତୋ ଶୁଭ ଦୃଷ୍ଟି ପାଇବାର ପାଇଁ ॥

— ଦଣ —

ଅମ୍ଳାନ

## ମାଗେ

ବକ୍ଷ ଭରି ଦେବି ମୁହିଁ ସୁଧା ଆଲିଙ୍ଗନ
ଆସ ଆସ ନିଖିଳର ଅନନ୍ତ ଜୀବନ !
ଆସ ଦୀନ ! ଆସ ଦୁଃଖୀ ! ନିରନ୍ନ କାଙ୍ଗାଳ !
ଆସ ହତଭାଗା ! ଆସ ରୁଗ୍ଣ ପ୍ରତାରିତ
ହୃତାଶ ପଥିକ ତୁମେ ! ଆସ ପଥ ଭ୍ରାନ୍ତ—
ଅଢ୍ୟାଗ୍ରସ୍ତ, ଅନାଗ୍ରସ୍ତ ଦୁର୍ଦ୍ଧର୍ଷ ଦୁର୍ଦ୍ଦାନ୍ତ !
ଆସ ପଙ୍ଗୁ ପଦାନତ ! ଆସ ବାଲ୍ ବନ ।
ନଦୀ ସିନ୍ଧୁ ଶୈଳ ଶିଖ ସଙ୍କଟ ବିଷମ !
ଆସ କ୍ଷୁଦ୍ର ନୀଳାମ୍ବର ତଳ ପ୍ରସାରିତ !
ଆସ କୀଟ !, ପତଙ୍ଗମ !, କ୍ଷୁଧିତ ତୃଷିତ !
ଆସ ହେ ଅନନ୍ତ ବିଶ୍ୱ—ତୁମ ସମସ୍ତର—
ଭିତରେ ରହିଛି ନିଚେଷ୍ଟ ଜୀବନ ନିର୍ଝର !
—ତା'ର କଳତାନ ମୁହିଁ ମାଗେ ଖାଲି ମାଗେ
ଝୁଲିବାକୁ ତୁମ ମେଳେ ଅନନ୍ତ ସରାଗେ !!!

# ସ୍ୱପ୍ନିଳ ମାଟି

କିଏ କାହା କୁଟୀରର ଆଦରର ଧନ
ଯାଉଛ ଏ ପଥେ ଘାଟେ ଦେଖୁଛି ତୁମକେ
କାହା ବୃକ୍ଷ ତଳେ କିଏ ବନ୍ଧା ଚିରନ୍ତନ
ଫୁଟିଛ କି ଫଳ କିଏ ଏ ମାଟି ଉପରେ ।
କାହା ପାଖେ କେତେ ଶିଶୁ ବଢ଼ିଅବ ନାଇଁ ?
ସ୍ଖଳିତ ପୂଠାଇ ସହୁ ଉତ୍ଥାନ ପତନ
ହତାଶେ କିଏ ବା ଶୂନ୍ୟେ ରହିଅଛି ଚାହିଁ
ଯତ୍ନେ ବଳେଇ ଶତ ବାଧା ଓ ବନ୍ଧନ ।
କା ନେଇ ଦୁର୍ଲଭ ଲକ୍ଷ୍ୟ କିଏ ପୋଛୁ ଦେଇ
ସାନ୍ତ୍ୱନାର ମଧୁମାୟା ଦେଉଛରେ ବୋଲି
ଅତ୍ୟାଚାର କରେ ଯେବେ ଅତ୍ୟାଚାରୀ କେହି
ଠିଆ ହୁଅ ବିପ୍ଳବର ଜୟଭେରୀ ତୋଳି ।
ତୁମ ଆଶା କଳ୍ପନାରେ ସ୍ୱପ୍ନିଳ ଏ ମାଟି
କେତେ ସ୍ୱପ୍ନ ରଖିନାଇଁ ଭବ ତାର ଗୀତ ।

# ରହରେ ଜୀବନ !

ପତ୍ରେ ପତ୍ରେ ଖେଳନାହିଁ ଶ୍ୟାମଳ ମାଧୁରୀ
ଫୁଲରୁ ଫୁଲକୁ ଅଳି ଅସିନାହିଁ ବୁଲି ।
ପଲ୍ଲବ ଗହଳେ କେଉଁ ବାଜନ ବିପିନେ
କୋଇଲି ତା' କୁହୁତାନ ମେଳୁନାହିଁ ଏବେ ।
ଏଗନ୍ତ ମାଧୁରୀ ଦେଖ ଅସିଲା ସମୟ
ବହୁନାହିଁ ମୃଦୁମନ୍ଦେ ମଦିର ମଳୟ
ଟପ ଟପ ଶ୍ୟାମ ଘାସେ ପଡ଼ୁନି ଶିଶିର
ଝରଣାଟି ବଣବୁଦା ତଳେ ଝର ଝର—
ଗୀତଟି ନୀରବେ ଗାଇ ଯାଉନାହିଁ ବହି
କେଉଁ ଶିଳା ତଳେ ତଳେ ଲହରେ ରହି ରହି !
ହଳଦୀ ବସନ୍ତ ବୁଲି ତରୁ ଶାଖା ପରେ
ହେମକାନ୍ତ ଶୋଭା ନାହିଁ ଖେଳାଏ କୁଣ୍ଟଳେ !
ଆସିବ ଆସିବ ଏବେ ରହରେ ଜୀବନ !
ଫୁଟିବ ତୋ ହୃଦୟର ମଧୁର ସପନ !

— ଶେଷ —

ଆମ୍ଳପି

## ରହିଲି

ରହିଲା ଏ ବୁକୁ ତଳେ ଲୁକୁତଳ ବ୍ୟଥା
ଭୁଲିଗଲ ! ଭୁଲିଗଲ ! କହିଲ ନି କଥା
ପରେ ହେଲେ । ଏତେ କିମ୍ପା ନିଠୁର ନିର୍ମମ
ଦେଖିନାହିଁ ମାଗୁଥିଲି ମୁହିଁ ଅକିଞ୍ଚନ
ହାତ ପାତ ଜୀବନର ଯେ ଟିକିକ ଲୋଡ଼ା
ବୁଝିଁଲ ନି ଲବେ ହେଲେ ଢାଳି ନେଇ ଢୋଳ !
ବୁଝିଲ ନି ମୋ ଭିତରେ କିଏ କାଳ କାଳ
କାନ୍ଦୁ ଅଛି ଢାଳି ସୀମାହୀନ ଲୁହ ଧାର ।
ମୁଁ ରହିଲି ଚିର ଦିନ ଲୋତକ ଅପ୍ଲୁତ ।
ମୁଁ ରହିଲି ଚିର ଦିନ ହୋଇ କି ବଞ୍ଚିତ !
ମୁଁ ରହିଲି ଚିର ଦିନ ଏକା ଏକା ଖାଲି !
ମୁଁ ରହିଲି ତୁମେ ଗଲ ଦୂରେ ଦୂରେ ଚାଲି !
ମୁଁ ରହିଲି ଚିର ଦିନ ଏଥି ହାତ ପାତ
ମୁଁ ରହିଲି ଚିର ଦିନ ଖୋଲି ମୋର ଛାତ !

— ରଜିଦ —

## ଆତିଥ୍ୟ

ଦୂର ମଫସଲ ଗାଆଁ, ଗୋଟିଏ ଅଶ୍ଶୀସ୍ବା
ଦେଖି ମୋତେ ପୂର୍ବଗଲା ତା ଦରିଦ୍ର ବୃଦ୍ଧା ।
କୁଟୀରେ ନଥିଲା କିଛି, ତରସ୍ତ୍ର କ ବଲି—
ଜରିବ ବସ୍ତ୍ର ମନେ, ସ୍ନେହାଦର ଭରି—
ମର୍ମ ତଳୁ, ଅଣିଲା ସେ ପକ୍ୱ ଫଳଟିଏ
ଅଦରେ ବାଢ଼ିଲା ମୋରେ ; କିଛି ନାହିଁଟି ଦେ
ଦେବାକୁ ଦରିଦ୍ର ବାସେ, ଯାଇଚ ସେ ଭାଳ
ସେତେବେ ସବୁ ଥିଲା ମୋର । ଅଶ୍ରୁ ଦୁଇ ଧାର
ନେଜ ପ୍ରାନ୍ତୁ ଢ଼ାଲ କେବେେ ଠିଅହେଲା ପାଶେ ?
ତାର ସେଇ ପ୍ରାଣ ବୋଲା ଅଭଥେ୍ୟ, ସହାସେ—
କହିଲ "ଜନନୀ ମୋର କିମ୍ପା ଦୁଃଖ କର ?
ମୋହ ପାଇଁ ରଖିଥାଅ ଏ ସୁଧା ଅନ୍ତର !
ତୁମ ଏଇ ସେନେହର ଲହରେ ଲହରେ
ଫୋଟ ଦିଅ ଓଦାରର ଏ ମାଟି ଉପରେ" ।।

— ପନ୍ଦର —

## ଦୂର କିନ୍ତୁ ନୁହେ

ଶିଶୁଟି ଚାହିଁ ଚାହିଁ ଚାଲିଯାଏ ମୋରେ
ସୀମାହୀନ ସେନେହର କି ମୋହନ ଡୋରେ
ମନେ ସେ ରଖିଛ ବାନ୍ଧି ! ପୁଣି ଚାହିଁ ଦିଏ
ମୋହଠୁ ସେ ଜୀବନର କଥା ମିଠା ପିଏ !
ତଥାପି କାନ୍ଦୁଛି ଚାହିଁ ; ତଥାପି ସେ କେତେ
ଛର ଦଳ ରହିଥିବ ମୋ ଦରିଦ୍ର କୋଳେ !
ଲୁହ ନେଇସେ ଚାହିଁଛି ମୁଁ ତାରେ ଖଣ୍ଡେ ଦୂରେ
ମଛକୁ ପଛକୁ ଚାହିଁ ତା' କୁଟୀର ଦ୍ୱାରେ
ଫେରିଯାଏ କାହା ଭୁଲେ । ଚାହେଁ ମନେ ଚାହେଁ
ମୋ ଭିତରୁ ସ୍ୱର୍ଗର କି ମଧୁ ସ୍ପର୍ଶ ପାଏ !
ତା' ଆଖିରେ ଲୁହ ପୁଣି ଲୁହ ମୋ ଆଖିରେ
ଦେବଙ୍କ ଅନ୍ତର ଯାଏ ଦେବଙ୍କ ଡ଼ାକରେ
ସିଏ ଦୂରେ ମୁହିଁ ଦୂରେ । ଦୂର କିନ୍ତୁ ନୁହେ
କଣ୍ଠର ଅତୁଳ ଭାଷା ନୟନର ଲୁହ !

ଅସ୍ମିତା

# ପଦେ କଥା

ତୁମେ ଭଲ ମୁହଁ ଶଲ ପଦେକ କଥାରେ
ଅଙ୍ଗ ନାଇଁ ଦେଖା ଦେଖି ମୁହଁ ଚାହାଁ ଚାହିଁ
ପଥପ୍ରାନ୍ତେ ଦେଖା ହେଲେ ଅଡ ହୋଇଯାଏଁ
ସାତ ଶବ୍ଦ ବଳି ସେତେକ ଏ ଧରାରେ ଥାଏଁ !
ମୋ ଅନ୍ତର ସୁଖ ଦୁଃଖ ଶବ୍ଦ ଗହ୍ୱର,
ତୁମର ଯା ଭଲ ମନ୍ଦ ସାର ବା ଅସାର,
କେବେ ନାହିଁ ରେଖାପାତ ତୁମ ମୋ ଭିତରେ ।
କେତେକ ହତଭାଗା ହୋଇ ରହୁଛେ ସତରେ ।
କି ମହା ସମୁଦ୍ର ସତେ ପାଏନାହିଁ ଅନ୍ତ !
ଏକ ପାରେ ତୁମେ ଅଛ ଏକ ପାରେ ମୁହିଁ
କେହି ତ କାହାକୁ ଲଭେ ପାରୁନାହିଁ ଛୁଇଁ
ପଦେ କଥା କେତେ ଭଣି ସାରପାରେ ପୂର୍ଣ୍ଣ !
ପଦେ କଥା ତୁହେ ସ୍ୱପ୍ନ ତୁହେ ଅକାରଣ
ପଦେକ କଥାରେ ବାନ୍ଧେ ଜୀବନ ମରଣ !

— ସଚର —

ଅଗ୍ନିଲିପି

# ନମସ୍କାର

ପ୍ରାଣରେ ଅନନ୍ତ ମାୟା ଆକାଶରେ ଭରି
କେ ମୋରେ ଆଣିଛ ଟାଣି ଦିନ ଦିନ ଧରି
କାହାରେ ଦେଖିଛ ଅବା କାରେ ଦେଖିନାହିଁ
ସଭିଏ ମୋ ଆପଣାର ଯୁଗ ଯୁଗ ପାଇଁ ।
ପଡ଼ିଗଲେ ଉଠାଇଛ, ଉଠିଲେ ମୁଁ ଚଲେ
ଲଭିଛି ଅନ୍ତରେ କେତେ ନବ ଗଉରବ !
ବିପଦ ଭିତରେ ଯେବେ ପଡ଼ିଛି ମୁଁ ଲଭିଁ
ଦେଇଛ କି ଉନ୍ମାଦନା କେତେ ଦୟା ବନ୍ଧୁ !
ଏ ଶୋଣିତ ପ୍ରତିବିନ୍ଦୁ ଭିତରେ ତୁମରି
ଦୟା, ଧ୍ୟାନ, ଆଶୀର୍ବାଦ ନିତ୍ୟ ଜ୍ୱଳାୟିତ !
କିଏ ସେ କେଉଁଠି ଅଛି ଏତେ ଆପଣାର !
ତୁମ ଯୋଗୁଁ ଖୁଲେ ପଥ ହୋଇ ଅଗ୍ରସର
କି ସମ୍ପଦ ଅଛି ମୋର ତୁମକୁ ଦେବାକୁ
ସ୍ତୁତି'ପଦପାତେ ଖୁଲେ କରି ନମସ୍କାର।

— ଅଠର —

# ସେଇ ହାତ ଅଣେ

ତରୁଣ ବୟସେ ଯେବେ ପଢ଼ିବାର ପାଇଁ
ସୁଦୂର ବିଦେଶେ ଯାଏ କେତେ ଥର କାହୁଁ
ଜନନୀରେ ଗୃହୁଁ ମୋର କରେ ନମସ୍କାର
ଦଅନ୍ତି ଅଶୀଷ ସେହୁ ଶିରେ ବାରବାର —
ଲଗାଇ ତାଙ୍କର ହାତ । କହନ୍ତି ସେ ବାଣୀ
"ଦେଖି ଗୃହୁଁ ନେଉଥିବୁ ବିଦେଶର ପାଣି-
ପବନ ସିବନି ଦେହେ । ବାଟେ ଗଲାବେଳେ
କାଳେଁ ଭୋକ ହେବ ଏଇ ଅଣେ ନେଏ ହେଲେ
ଭୁଜା କିଣି ଖାଇବୁରେ ପାଣି ମନ୍ଦେ ପିଇ
ଗୁଲବୁ ବାଧିବ ନାଇଁ ।" ଏମନ୍ତେ ସେ କହୁ
ଦଅନ୍ତି ପଇସା ଅଣେ କାନିରୁ ଫିଟାଇ
ମୋ ଦରିଦ୍ର ଜନନୀର ସେଇ ଦାନ ପାଇ
କେତେ କୃତ କୃତ୍ୟ ହୁଏ ! ସେଇ ହାତ ଅଣେ
ଏବେ କିଏ ଦେବ ଯେବେ ଭ୍ରମେ ବିଜୁବନେ ?

— ଅଣିଶ —

# ଯାତ୍ରା ପଥେ

ବୁଲୁଛି ମୁଁ ପଥଧାରେ ଖୋଜି ଖୋଜି କାହାରେ
ସିକ୍ତ ମୋ ନୟନ ପତା ଉଷ୍ଣ ଲୁହ ଧାରେ ।
ମୋ ଭିତରେ ରହିଅଛି ଯେଉଁ ପ୍ରାଣ ପକ୍ଷୀ
ହୁଏତ ସେ ହେଉଛି ତାର ଜୀବନର ସଖୀ ।
ପାଇବାକୁ ଦେଖିବାକୁ କହିବାକୁ କଥା
ଲଭିବାକୁ ତା ଅମୃତ ସେନେହ ମମତା ।
କେତେ ଦୂର ଗଲେ ତାରେ ପାଇବାକୁ ହେବ
କେତେ ସାଧନାର ପରେ ମିଳିବା ସମ୍ଭବ ।
ତା' ଅନ୍ତର ମଧୁ ଟିକେ କହୁ ପଥ ଧାର—
ଦୂବଘାସ ଗଛପତ୍ର ବଣ ବିଲ ମାଳ ।
ଆକାଶ ବତାଶ କହ କହ ମେଘମାଳ
ବୃଥା ମୋ ଅନ୍ୱେଷ ଅବା ଫଳ ଅଛି ତାର ।
ଶତ ସୁଖ-ଦୁଃଖ ଆଶା ନିଆଶା ଭିତରେ
ତା' ବନ୍ଦନ ମୋରେ କିମ୍ବା ଅକୁଳିତ କରେ ।

— ବଣ —

## ଯେବେ

ଜୀବନର ଯାତ୍ରା ପଥେ କେତେ ବାଧା ଅସେ
କେତେ ବେଦନାରେ ନେଇ ଲୁହ ନୀରେ ଭାସେ !
ସବୁ ବାଧା ବିପଦର ନିଦାରୁଣ କ୍ଷତ
ବକ୍ଷେ ବହି ଚାଲିଛି ମୁଁ ଏଥି ଅବିରତ;
ଗୋଟି ଗୋଟି କହିବାକୁ ଇଚ୍ଛା ହୁଏ ମମ
ତୁମର ସମ୍ମୁଖେ ଯାଇ, ସେବେ ଏ ମରମ
କେତେ ଥର ଯାଇ ଅଛି ନିଦାରୁଣେ ଫାଟି
ଟୁଟିବ ଫୁଟିବ ତମେ ଯେତେ ଯାହା କ୍ଷତ !
ଅନ୍ତରେ ଅନ୍ତର ଢାଳି ଆପଣାର କରି
ଏ ମହା ବିଶ୍ୱାସେ ମୁହିଁ ଦିନ ଦିନ ଧରି
ଚାଲିଛି ଧରାରେ ସହି ମାନ ଅପମାନ
ସୀମାହୀନ ପଦାଘାତ ଶତ ବକ୍ରବାଣ ।
ଯେବେ ପୋଛି ଦେବ ମୋର ତପ୍ତ ଲୁହ ଧାର
ସେଇ ମୋର ସୀମାହୀନ ମୋହନ ସମ୍ଭାର !

— ଏକୋଇଶ —

ଅଞ୍ଜଳି

## ଶେଷ-ଶଯ୍ୟା—

ଏଇ ତୋର ଶେଷ ଶଯ୍ୟା ? ଡ଼ୋର ଛିନ୍ନ ଭିନ୍ନ
କେଉଁ ମହା ଶୂନ୍ୟେ ଯିବୁ ମିଶି ତୋହ ପର—
ଉଦାର ସୁନ୍ଦର ମୁଗ୍ଧ କମନୀୟ ପ୍ରାଣୀ
ଧରିତ୍ରେ ପାଇବ କାହିଁ ନାହିଁ ପାରେ ଜାଣି !
ନୟନ ଯୁଗଳ ତୋର ଅଶ୍ରୁ ଉଠେ ଝରି
ଏ କୁଟୀର ପ୍ରତି ଜଣେ କେତେକେ ହୃଦ ଭରି
ପାଉଥିଲୁ ଭଲ ତୁମ୍ଭ ! ମନେ ପଡ଼େ ମମ
ଯେ ଦିନ ମୁଁ ପଡ଼ିଥିଲି ହୋଇଣି ବିପନ୍ନ
ସ୍କନ୍ଧ ବନ୍ଧୁ ନିର୍ବିଘ୍ନରେ ନେଇଥିଲୁ ଦୂରେ
ଅଜି ଯେବେ ସେଇ କଥା ବସି ମୁହିଁ ଝୁରେ
ଲୁହ ସିକ୍ତ ହୋଇଯାଏ ଅଖି ବେନି ପତା
ତୋହ ମୋ ଭିତରେ କିବା ବିରାଟ ମମତା !
ଭୁଲିଯିବୁ ? ଅଜିଁ ସେ ମୁଁ ଶେଷ ଥର ପାଇଁ
ହୃଦୟ ବନ୍ଧନ୍ତୁ ବଡ ବଟେ କିଛୁ ନାହିଁ !

— ବାଇଣ —

# ମୂଲ୍ୟ

ଶ୍ୟାମଳ କେଦାର ମାଳେ ଯେବେ ଭୁଲିଯାଏ
ହେମନ୍ତେ ମୁଁ କେତେ ବାର ତତେ ଛୁହୁଁଥାଏ !
ନାବଡ଼ ଲହ୍ୱାଣୀ ଡାଳି । ତୋର ପରଶ୍ରମ—
ମୂଲ୍ୟ ଦେବାପାଇଁ ସାରା ପୃଥିବୀ ଅକ୍ଷମ !
ଦେହରେ ମଳିନ ବାସ ମୁଣ୍ଡରେ ଗାମୁଛା
ନଗ୍ନ ପିଠି, ଅନ୍ନ ବିନେ ପେଟ ଦିଶେ ଛୁଞ୍ଚା
ଦିନ ନାହିଁ ରାତି ନାହିଁ ସାରା ବର୍ଷ ପାଇଁ
ଖଟି ଖଟି ଅୟୂ ତୋର ଭୁଲିଯାଏ କାହିଁ
ଗୃହେ ଦାରିଦ୍ର୍ୟର ଛାୟା ପ୍ରତି ଶିଶୁ ମୁଖେ
ମୁହୂର୍ତ୍ତେ ଜୀବନ ଶିଖି ଭୋଗିନାଉଁ ସୁଖେ
କୋଟି ଦୁଃଖ ନିର୍ଯାତନା ଅଭାବ ଭିତରେ
ନାମ ତବ ଭୁଲିଅଛୁ ଏ ଧରଣୀ ପରେ !
ହାତ ଭଙ୍ଗା କାମ ଯିଏ ଅସିଅଛୁ କରି,
ତବ ଦାନ ଥା' ନେତେ କି ଅଶ୍ରୁ ଥିବ ଭରି ?

— ଚେତଣ —

## ବିଦାୟ-ଦୃଶ୍ୟ

ଛାଳ ପଡ଼ା ଇଷ୍ଟେସନ ଟୋଳର ସଙ୍ଖାଳି,
ବସିଲଣି ଯାଇ ଏବେ ପାସେଞ୍ଜର ଗାଡ଼ି ।
ରେଙ୍ଗାମ ମୂଲକେ ଯିବ କେତେ ଦୂରେ ଛାଡ଼ି,
ମାଅଟି ସେ ଲଗି ତାର ରହିଅଛି ଗୃହେଁ ।
ବରଟିଛ ଅନ୍ତରାଳେ, ଅପଣା ଭନଚେ,
ମାଆ ପୁଅ ସ୍ତୁର ଅଖି ଏଭେ ନଷ୍ଟ ଲୟେ ।
ଏବକୁ ଅଟେକ ଗୃହେଁ ଦୁଅଣ୍ଡ କ କଥା,
ଧାର ଧାର ଅଶ୍ରୁ ବୋହେ, ଦୃଟେକ ଗୁରୁ ବ୍ୟଥା ।
ଅବରୁଦ୍ଧ ବାଷ୍ପ ସମ ପଡ଼ଇ ଉଛୁଳି,
ଘଣ୍ଟିର ମାରଣ ଗାଡ଼ି ଦୂରେ ଯାଏ ଚଳି—
ଅନପେକ୍ଷ କର୍ତ୍ତବ୍ୟର ମହାମୂର୍ତ୍ତି ପରି;
ଲୁହ ଅଖି ଲୁହ ଅଟେଖ ଗୃହେଁ ର ସେପରି ।
“ବହୁଲ ଅବ୍ରୁଣୀ ହୋଇ ଧନମାଳୀ ଏଥି”,
“ଟୋଇଟେ କାନ୍ଦରୁ ନାଇଁ ଅସିବ ଲେଉଟି ।”

— ଚବ୍ଷ —

ଅନ୍ଧମୀ

# ଗୋଟିଏ ଅନ୍ତର

ଭୁଲିଗଲ ଭାବନା ହେ ଭୁଲିଗଲ ତମେ
ରହିଲି ଏକାକୀ ନିଃସଙ୍ଗ ନିର୍ଜନ ଭୁବନେ
ମୋ ଅନ୍ତର ବ୍ୟଥାଟିକୁ ବୁଝିବାର ପାଇଁ
ଏ ମର ଭୁବନେ ଆଉ କେହି ଜଣେ ନାହିଁ
ଗୋଟିଏ ଅନ୍ତର ତୁମେ ଥିଲ ମୋହ ଲାଗି
ମୋ ବକ୍ଷେ ବେଦନା ଯେବେ ଉଠୁଥିଲା ଜାଗି
ଅଶ୍ରୁ ଯେବେ ବୋହୁଥିଲା ବେନି ଗଣ୍ଡ ବାହି
ପୋଛୁଅଛ ଆପେ କହି ମୁଁ ଅଛି ତୋ ପାଇଁ !
ନାହିଁ ଥିଲା କେତେ ଦମ୍ଭ କେତେ ମୋର ବଳ ?
କେମନ୍ତେ ମୁଁ ଥିଲି ସେବେ ଉଛଳ.ଚଞ୍ଚଳ !
ପ୍ରଭାତ ଆକାଶ ପରି । କିମ୍ବା ଦିନ ରାତେ
ନ ଭାବୁଥିଲି କିଏ ଜଣେ ଅଛି ମୋ ପଛାରେ ।
ଏବେ ଯେବେ ଦୁଃଖ ହୁଏ ଅଶ୍ରୁ ବୋହୁଥାଏ
ରୁହିଁ ରହେ ମହା ଶୂନ୍ୟ ସୁଦୀର୍ଘ ନିଶ୍ୱାସେ !

ଅଞ୍ଜଳି

# ଜୀବନ

କିଏ ଏ ଧରାରେ ଅଟେ କେତେ ଦିନ ପାଇଁ
ପୁଣି ଖସିଯାଏ କା' ନିର୍ଦ୍ଦେଶ ଅନୁସାର
ସବୁ ବୁଝି ହେଲା କିନ୍ତୁ ବୁଝି ହେଲା ନାହିଁ
ଜୀବନର ଇତିହାସ କାଳ କାଳ ଧରି ।
ସକାଳେ ମୁଁ ଦେଖିଥିଲି ଏଇ ବସୁନ୍ଧରା
ନାଚି କୁଦି ଖେଳୁ ଥିଲି କୁଟୀର ଅଂଗନେ
ଟକଟକିବାର ଅଭିଂସିତ କରେ ମମ ଧରି
ଶୋଇଛି ସନ୍ଧ୍ୟାରେ ଏବେ ଅନ୍ତିମ ଶୟନେ
ଅଧେ ତୃଣ କଲେ ଅଧେ ପଡ଼ିଛି ଭୂତଳେ
ଲକ୍ଷିବାକୁ ମିଳି ନାହିଁ ଲଟେବ ଅବସର
ଜନନୀ ଗ୍ରହିଁତ ଛାଇ କେମନ୍ତେ ବିକଳେ
ମମତାର ଶେଷ କାହିଁ ଯୁଗ ଯୁଗାନ୍ତର ।
ଏ ମହା ବିରାଟ ସୃଷ୍ଟି ପ୍ରହେଳିକା-ମୟୀ
ଭିତରେ କି ଅମୃତର ସ୍ରୋତ ଯାଏ ବହି ।

— ଲବଣ —

ଅମ୍ଲନୀ

## ସଇତାନର ସଂସାର

ତୁମେ କହେ ଦେଖିବାକୁ ଚାହୁଅଛ ଭାବେ
ସଇତାନର ସଂସାର ଅଛି କେଉଁଠାରେ !
ତୁମେ କହେ ଖୋଜୁଅଛ ନିମିଷର ପାଇଁ
ଟିକିଏ ଆସିବ ବୁଲି ସେ ରାଇଜେ ଯାଇ ?
କିଭଳି ସେ ସଇତାନ ଆକାର ପ୍ରକାର
କିଭଳି ଥିବେଟି ହୋଇ ତାର ପରିବାର
ତାର ବନ୍ଧୁ ସଖା ହୋଇ ଥିବେ କେଉଁମାନେ ?
କି କାମ ସେ କରୁଥିବେ କି ଚିନ୍ତା ପରାଣେ
ଜାଗୁଥିବ ? ତୁମ ପ୍ରତି କିଭଳି ମମତା
ଦେଖାଇବେ କହିବେ କି ନାଇଁ ମିଠା କଥା
ଯିବାକୁ କି ଜାଗେ କୁତୁହଳ ବାରବାର ?
ପାରୁନ କି ଦେଖି ? ସଇତାନର ସଂସାର—
କୁଟିଳ ସର୍ପସମ ଅଛି ଏ ଧରଣୀ ଭରି
ତା' ବିଷ ଜ୍ୱାଳାରେ କାନ୍ଦେ ଶ୍ୟାମା ବସୁନ୍ଧରା !

ଅମ୍ଳଲିପି

## ଅନ୍ୟ ଏକ ପ୍ରାଣୀ

ଧନୀଘର ଶିଶୁଟିଏ କନକ ପିତୁଳୀ—
ରୂପ ତାର ଦେଖି ପ୍ରାଣ ପଡ଼ଇ ଉଚ୍ଛୁଳି
ଯାଇ ପଡ଼ୁଯାବେ ଯେତେ ପ୍ରିୟ ପରିଜନ
ସମସ୍ତେ ଧରନ୍ତି ତାରେ ଦିଅନ୍ତି ଚୁମ୍ବନ,
ଶୁଣନ୍ତି ଦରୋଟି ଭାଷା ଓଠ ପୁଟୁ ତାର
କୃତାର୍ଥ ହୁଅନ୍ତି ସେଇ ଧନୀ ପରିବାର !
ଗରିବ ଘରର ଏକ ଶିଶୁ ନିତ ଅସେ
ଯୁହେଁ ଯାଇ ଜନତାରେ, ଜନ ଜନ ଭାଷେ—
କେତେ କଣ କହିଯାଏ, କେହି ଜଣେ ଚାହିଁ
ନିମିଷକ ପାଇଁ ତାରେ କୋଳେ ଧରେ ନାହିଁ !
ନିତ ସେ ପିଲାଟି ଯୁହେଁ ନିତ ଯାଏ ଚଳି !
କେହି ଜଣେ ଡାକେ ନାହିଁ ଅପଣାର କରି
ଫେରିଯାଏ ଚାଲି କେତେ ନିରାଶ ଯୁହାଣୀ !
ସେ ଯେନ୍ତେ ଏ ଜଗତରେ ଅନ୍ୟ ଏକ ପ୍ରାଣୀ !

ଅନୁଲିପି

# ମୁଁ ଚାହେ ✓

ପୃଥିବୀର କେଉଁ ଏକ ରାଜ-ପଥ ଧାରେ
ଠିଆହୋଇ ରହିଁଲେ ଏ ମହା ଜନତାରେ
ଦେଖିବ ଅଭାବ ଦୁଃଖ ଅଛି କେତେ ଭାର
ହେଉନ ସବୁର ଓଠେ ମୂଲ୍କ ଫସୁର !
ମୁଁ ଚାହେ ଏ ସୀମାହୀନ ଜନତାର ହୃଦ
ନାଚୁଥାନ୍ତା ପୁଲକରେ । ଖାଲି ଦିଅ ନିଅ
ହେଉଥାନ୍ତା ପରସ୍ପରେ ଅନନ୍ଦ କଲ୍ୟାଣ
ହସୁଥାନ୍ତା ଚିର ଦିନ ସକଳର ପ୍ରାଣ
ନଛାଡନା ସର୍ବସ୍ୱ ପରି—ପଥେ ଘାଟେ ସବୁଁ
ଫୁଲଗଲେ ଫୁଟି ଥାନ୍ତା ସୁବର୍ଣ୍ଣର ଛବି
ବାଳକ ବାଳିକା ଯୁବା ସଜବନୀ ଦେହୁ
ବିକଳାଙ୍ଗ ହୋଇ ଜଣେ ନାହିଁ ଥାନ୍ତେ କେହୁ ।
ନାହିଁ ଥାନ୍ତେ ନିଅଶ୍ରିକ ହୋଇ କେହୁ ଜଣେ
ବନ୍ଧୁଥାନ୍ତେ ଏକୁ ଏକେ ଅନନ୍ତ ବନ୍ଧନେ ।

— ଅଣଡବଣ —

## ସ୍ମୃତିର ଉନ୍ମେଷ

ପରିଚିତ ଏଇ ମୋର ଉଟିମା ସୈକତେ
ପଦ ଚିହ୍ନ ଯେତେ ବାର ଯାଏ ଲିଭି ପଥେ
ନୀରବେ କପାଇଁ ସ୍ମୃହେଁ ବେଳେ ବେଳେ ରନ୍ଧ୍ର
ବିଜନ ଏ ଭୂଇଁ ଅଛି କି ସଂପଦ ବନ୍ଧୁ—
ମୋହ ପାଇଁ । ପାଦ କଁପା ଚଳେ ନାଇଁ ଅଗେ !
ଭୁଲୁ ଡଳେ କାହା ସ୍ମୃତ ବାର ବାର ଜାଗେ !
ଦରିଦ୍ର କୃଷକ ସେ ଯେ ମୋହର ପଲ୍ଲୀର
ଅଭାବ ଓ ଅନାହାରେ ଢାଳି ଅଶ୍ରୁ ନୀର
ଅନ୍ତିମ ଜୀବନେ ଏଥି ବୁଜିଥିଲା ଆଖି ;
ତା ବକ୍ଷ ବେଦନା କହ କିଏ ବୁଝିଲା କି ?
ଏଇ ମାଟି ପାଇଁ ସେହୁ ରକ୍ତ ଦେଇ ଦେଇ
ଜୀବନ ଅଧ୍ୟାୟ ଶେଷ । ଜଣେ ହେଲେ କେହୁ—
ଦେଲନାଇଁ ଗଉରବ ତା'ବିରାଟ ଦାନେ
କିନ୍ତୁ ତା'ଅନ୍ତର ବୀଣା ବାଜେ ବିଶ୍ୱ ପ୍ରାଣେ !

— ଛବିଶ —

ଅସ୍ଥଳୀ

## ପ୍ରଥମ, ଦ୍ୱିତୀୟ, ତୃତୀୟ,

ପ୍ରଥମେ ନୟନେ ଯେବେ ମିଳିଲା ନୟନ
ଓଠେ ଓଠେ ସ୍ମିତ ହାସ ମୋହନ କମ୍ପନ !
ଦର ବିକଶିତ ପଦ୍ମ କଳିକାଟି ପରି
ସେ ସ୍ମୃତି ପରାଣେ ମୋର ରହିଛି ସୁନ୍ଦରି !
ଦ୍ୱିତୀୟେ ସେ ଦିନଗଲା ହେଲା କଥା ଭାଷା
ମରମେ ମରମେ କିବା ଉଦ୍ଭଟ ଅଶା
ଭୁଲିବା ଏକାନ୍ତ ଚାଲି ପରାଣେ ପରାଣ
ଭୁଲିବନି କହିବାର ଦେଇ ଲକ୍ଷ ସଣ !
ତୃତୀୟେ ସେ ଦିନ ଗଲା ଗ୍ରହିଲା ସୁନ୍ଦରୀ !
ଅସ୍ଥି ,ଭସ୍ମ ଅବଶେଷ ରହି ଅଛି ପଡ଼ି !
ଜନହୀନ ଶମଶାନେ ଶିର ପଦ ତଳେ
କାହାର ଅପେକ୍ଷା ଯେବେ ଲୋଡ଼ି ନୀରବରେ !
ଯାର ଅଙ୍ଗେ ମୋର କିବା ବିଶୁଦ୍ଧ ପ୍ରଣୟ
ଧରିଲି ଯେବେ ଭସ୍ମ ଅସ୍ଥି ଚତୁଷ୍ଟୟ !

— ଏକତାରଣ —

ଅଗ୍ନିଲିପି

## ପ୍ରଶ୍ନ

ବିଶାଳ ବସୁଧା ଯେବେ ଆମ ସମସ୍ତର
ଏଥି ଯେବେ ଜନ୍ମ ଆମ, ମରଣ ଅମ୍ଭର
ଏଇ ଯେବେ ଏକ ମାତ୍ର ଆମ ପାଇଁ ସ୍ଥଳ
ବାନ୍ଧି ନେବା ପାଇଁ ନିତ୍ୟ ଆମ ଲୀଳା ଛଳ
ଯେବେ ଯା'ର ବିଲ ବନ ପାହାଡ଼ ପ୍ରାନ୍ତର
ଖୋଲିଛି ଆମରି ପାଇଁ ତା' ମଧୁ ଅନ୍ତର
ଏ ଯେ ଅଯାଚିତ ଦାନ, ଏ ଯେ ସ୍ୱର୍ଣ୍ଣମାୟା
ଆମକୁ ଦେବାକୁ ଯେବେ ଏ ଧରିତ୍ରୀ, ଅହା
ହୁଅଇ କୁଣ୍ଠିତ ଲବେ ; ଆମେ କାହିଁ କହ
ରଚେ କଳି ଉଚ୍ଛୃଙ୍ଖଳ ବିଷମ ଦୁର୍ବହ
ଆମେ କାହିଁ ଏ ମାଟିକୁ ଚିର ଦିନ ପାଇଁ
ଭେଦ ଦ୍ୱନ୍ଦ୍ୱ ହତ୍ୟା ବିଷେ ଦେଉଛେ ଭସାଇ ?
ରଖି ଅଛେ ସଏତାନ ନିତ୍ୟ ବାସ ପରି
ସୀମାହୀନ କଳଙ୍କରେ ସମାଚ୍ଛନ୍ନ କରି ।

— ବିଭଶ —

ଅନୁଳିପି

## କୁଲିବାହୀ ଯାତ୍ରୀଗାଡ଼ି

ଏ ପାଖେ ବସିଛି ମୁହିଁ ସେଇ ପାଖେ ଚାହେଁ
କୁଲିବାହୀ ଯାତ୍ରୀ ଗାଡ଼ି ତୀବ୍ର ବେଗେ ଧାଏଁ
ସୁଦୂର ମୁଲକେ କାହିଁ ? ହୋଇ ଗୋଠି ଗୋଠି
ବସିଛନ୍ତି ମୋ' ଦେଶର ଲୋକ କୋଟି କୋଟି
ସେମାନେ ନିରନ୍ନ କୁଲି ଘର ନିରାଶ୍ରୟ
ନାହିଁ ଜମି ବାଡ଼ି ନାହିଁ ପାଆନ୍ତି ଅଭୟ
ତାହାଠୁ ନିମେଷ ପାଇଁ ! ଯାଉଥିବେ ଦୂରେ
ଛାଡ଼ି ଭାଇ ଭଗ୍ନୀ ଜାୟା ନିଜ ନିଃସ୍ବ ପୁରେ ।
ଦେହେ ଛିନ୍ନବାସ, ରୁକ୍ଷ କେଶରାଶି ଶିରେ,
ଦୈନ୍ୟର ଅଭାବ ଛାୟା ସମସ୍ତ ଶରୀରେ
କେମନ୍ତେ ଉଠୁଛି କହ ବୁକୁ ଫାଟି ବାଣୀ !
ମୋ ଦେଶର ଏଇମାନେ ହତଭାଗା ପ୍ରାଣୀ !
ଚିରଦିନ ଭୋଗି କଷ୍ଟ ରୋଗ ପରାଭବ
ଲଭେବ ନାହାନ୍ତି ଜାଣି ଜୀବନ ସୌରଭ ॥

— ତେଜଶ —

ଅନୁଲିପି

# ଦୁଇ ସ୍ରୋତ

କେତେ ଦୁଃସ୍ଥ କେତେ ଦୀନ ଏ ଧରଣୀ ତଳେ ।
ପଥ ଧାରେ ଗଛ ମୂଳେ ଆଖି ଆଗେ ପଡ଼େ
ତାହା ଦେଖେ ଛିନ୍ନ ବସ୍ତ୍ର ଶବ ଜୀର୍ଣ୍ଣ କାଏ
ଦ୍ୱାରେ ଦ୍ୱାରେ ଭିକ୍ଷା ମାଗି କାଏ ଦିନ ନାଏ
କେ ପାଏ ଲାଞ୍ଛନା ମାତ ଗାଳି ଅତ୍ୟାଚାର
କରୁଣ କାହାଣୀ ଢାଳି କେ' ଲୋଡ଼େ ଆଧାର
ଅନ୍ନ ଅଳଥାଳ ପୁତ, ଶୀର୍ଣ୍ଣ ଶିଶୁ ଡାକେ
ଦରିଦ୍ର ଜନନୀ ତାର ଅନ୍ନ ବସ୍ତ୍ର ମାଗେ
ଧରଣୀର ଏ ଦରିଦ୍ର ଜୀବ ପ୍ରତି କାର—
ଅନ୍ତର ଉଠେ ନା କାନ୍ଦି । ତାହାର ବିସ୍ତର
ମରମେ ଉଠେ ନା ଲବେ କେମନ୍ତେ ଏମାନେ
ଉଦ୍ଧବେ ଧରଣୀ ତଳେ ମନ ସନମାନେ
ଚଳିଗ ଏକଇ ସ୍ରୋତ କଳତାନ କରି
ଆନ ସ୍ରୋତ ପ୍ରାଣହୀନ ଯୁଗ ଯୁଗ ଧରି ।

— ଚନ୍ଦ୍ରଚରଣ —

ଅସ୍ମଲିପି

## ହୋଇଥିଲେ

ହୋଇଥିଲେ ଥିଲ ଘର କାଟଶାସ୍ତ୍ରୀ ବାଳକା
ଓଠ କଣି ଏଇକଳି ପଢ଼ିଥାନ୍ତା ଫିକା ?
ଫିଟି ଅସୁ ନଥାନ୍ତା କି ରଙ୍ଗ ଯୌବନର
ନ ଥାନ୍ତା କି ଦେହେ ପାରିଜାତ ପଦ୍ମଳ !
କନକ କପାଳ ତଳେ ଭ୍ରୂଲତାର ଛାଇ
ଲଟଙ୍କ ଲଟଙ୍କ କେତେ ତଳେ ପଡ଼ୁଥାନ୍ତା ଲଇଁ
ରକ୍ତ କୋକନଦ ପରି ହାତର ପାପୁଲି
ଦିଶୁଥାନ୍ତା କେବଳୀସ୍ପୃ, ପିଠେ ବେଣୀ ଫୁଲ—
ପଡ଼ିଥାନ୍ତା ବିମୋହନ ବିମୁଗ୍ଧ ଠାଣିରେ
କେଉଁ ଗନ୍ଧକେମା କେଉଁ ଉର୍ବଶୀ ଶ୍ରେଣୀରେ
ସମାନ କରନ୍ତା କିବା ? ପ୍ରେମ ହର୍ମ୍ୟ କୋଳେ
ସୁନେଲ ସପନ ଦେଖୁଥାନ୍ତା ନେଇ ଡୋଳେ ।
ସୀମାହୀନ ଅମ୍ବରର ଅଭ୍ୟାସରେ ପଢ଼ି
ତା' ଉରରୁ ମଣ୍ଡଅଛୁ ସରଗ ଅପ୍ସରୀ ।।

— ପଞ୍ଚଚରଣ —

# ଭୋକିଲା ପେଟ

ଯେଉଁଠି ଭୋକିଲା ପେଟେ ହୋଇ କଲବଲ
ସହୁଛି ଅସଂଖ୍ୟ ପ୍ରାଣ ମୋର ସମାଜର !
ଖୁନ୍ଦି ଦେଲେ ଖୁନ୍ଦିବାକୁ ଇଚ୍ଛା ହୁଏ ନାହିଁ
ସେ ସମାଜ ଭାଗ୍ୟ କିବା ଶିଖ୍ ଅଛି କାହିଁ ?
କିଏ ସେ ମାଗୁଛି ଭିକ ପିନ୍ଧି ଚିରା କନା
କି ବେଦନା ବୁକୁତଳେ ତାକୁ ଏକା ଜଣା
ସିଏ କାହା ଅବସ୍ଥାର କିଏ ମାଗି ମାଗି
ଫେର ଅସେ ରକ୍ତ କରେ ଲହୁ ଜଠେ ଲାଗି !
ନେଇ ପ୍ରାନ୍ତେ ବାର ବାର, ଯେତେ ପୋଛି ଦେଲେ;
କିଏ ଖାଇବାକୁ ନାହିଁ ପାଇ ଅଜ ବେଳେ
ନିରାଶ ବସିଛି ତାର ଜୀର୍ଣ୍ଣ କୁଡ଼ିଆରେ,
ଏ ସବୁ ଦେଖୁଛି ବସି ଅଜି ଏ ଗାଆଁରେ !
ଭୋକିଲା ପେଟର ନିଦାରୁଣ ଛଟପଟ—
ଭିତରେ କି ମଧୁ ସ୍ୱପ୍ନ ହୋଇବ ପ୍ରକଟ !!

— ଛତଣ —

## ଏ ମାଟି କୁଢ଼ଅ ତଳେ !

ଏ ମାଟି କୁଢ଼ଅ ତଳେ ପୋତା ମାଣ୍ଡୁ ସବୁ
ଏଇ ଯେ ପିଲ୍ଲାଟିମାନେ ଛନ୍ନ ଦମ୍ଭ.ଧରି
ଦେଖିଲେ ପଥର ପ୍ରାଣ ଉଠିବ ତରଳି
କାବଲା ତରୁଣ ନେନେ ଥର ଥର କରି
ମୁହଁ ଚନ୍ଦ୍ର ସେଇ ମାନେ ଭକ୍ତ ମନ୍ଦୀଦଳ
ଖାଇଥିଲେ ଏଇମାନେ ସତାନ ଦ୍ରୁମର
ଏଭଳି ସ୍ଥାନମାନେ ବନ୍ଧୁଥାନ୍ତ ପଡ଼ି ?
ଉଠନ୍ତାନି କାନ୍ଧ ଶିର ଉପଶିର ଧରି
ତୁମର ଶୋଣିତ ବନ୍ଦ, ଏବେ ନେନେ ଘୃର୍ଣ୍ଣ
ଟିକିଏତ ପଶୁତ୍ତୁନ ! ତୁମେ କାହିଁ ପାଇଁ -
ଖାଉଚ ଶାସକ କହ ? ଶାସକ ଅନ୍ତର
ଧରଣୀର ବେଦନାରେ ଯେବେ ନିରନ୍ତର
ନୋ କାନ୍ଦବ, ନ ଭାଳିବ ପନ୍ତା ତାହିଁ ଦବ
ସେ ନୁହେ ଧରାର ମୂର୍ତ୍ତିମାନ ଉପଦ୍ରବ ?

— ସତତଚରଣ —

ଅନୁଲିପି

## କଳାସୂତା

ଝିଅଟିକି ସାତ ପୂରି ହେଲାଣି ଯେ ଆଠ
ସ୍କୁଲକୁ ଯାଏ ନିତ ପଢ଼ିବାକୁ ପାଠ ।
ସେ' ଦିନ କହିଲା ତାର ଜନନୀରେ ଝୁନ୍ଦି
'ବୋଉଲୋ ଆସନ୍ତ୍ର ପିଠେଲ୍ ପଢ଼ିବାର ପାଇଁ
ତା' ବେକେ ରସୁଣୀମାଳ ପଶୀସୁନା ହାର
ମୋରେ କାହିଁ କରିଅଛୁ ଏତେ ନାରଖାର
ମୋ ବେକ ଲଙ୍ଗଳା ରହି, କହୁ ମତେ କହୁ
ଗୋଟିଏ ଚେନ୍ ମୁଁ ତୋର ଆଦରର ଝିଅ
ନଥିଲେ କଉଡ଼ିଟିଏ କଳାସୁତାଟିଏ—
ଝିଅଟେ ଟିକେକର କଣ ମାନହାନି ଯିଏ ?'
କହିଲା ପ୍ରେୟସୀ ମୋରେ ଶିଶୁ କନ୍ୟାଟିର
ଅନ୍ତର ବେଦନାଟିକ, ଲବେ ପ୍ରଭାତୀର—
ନଦେଇ ଭାବିଲି କେତେ ସୂତ୍ରୀ ଅଛି କିଏ !
ମୋ ପିଲାର କଣ୍ଠେ ନାଇଁ କଳାସୁତାଟିଏ ।।

— ଅଠତ୍ରିଶ —

# ଅଶ୍ରୁ ପ୍ରାର୍ଥିନୀ



ଡାଳି ଫୁଟିଥିଲ ତମେ ପୁଷ୍ପ-କଳି ସମ
ତାହାର କୁଟୀର ପୁରେ, ସରଗ ନନ୍ଦନ ;
ଖେଳି ବୁଲୁଥିଲ ତହିଁ, ଆଜ କାହୁଁ ତମେ
ଅସହାୟ ଅବସନ୍ନ ଲଙ୍ଘିଲ ଭୁବନେ;
ଓଠର ମୋହନ ହାସ ବେଣୀର ବିନ୍ୟାସ
ତ୍ରିସ୍ତ ଛଟେ ଛଡ଼ିବାର ମୋହନ ସନ୍ତୋଷ
ସବୁ ଆଜ ସ୍ୱପ୍ନ ସମ ଗଲା ଦୂରେ କାହିଁ
ନୟନୁ ଝରଇ ଅଶ୍ରୁ, ଆଶ୍ରା ମିଳେ ନାହିଁ ।
ମୁଣ୍ଡ ଗୁଞ୍ଜି ରହିବାକୁ କେଉଁଠି ନାଇଁ ଠାବ
ଦୁଅ ଗୋ କଣେ ଶୋଷି ବଧୂ କେଉଁ ପରିବାର
ମୁକ୍ତି ତା ଛଇଲା ତମେ ? ମଣିଷର ହାତ
କେମନ୍ତେ ଏ ପୃଥିବୀକୁ କରେ ଅଭିଘାତ;
ମଣିଷ ଭିତରୁ ଯେବେ ଜାଗେ ସୟତାନ
ମାରିଦିଏ ଜୀବନର ସବୁ ମଧୁ ଗାନ

— ଅଣରୁଳଣ —

ସ୍ନେହଲିପି

## ଜୀବନ ମମତା

ଶୀର୍ଣ୍ଣ ଶିଶୁ କାଖେ ଆଜ ଚାଲିଛ ଭଗିନି
ବାରଦ୍ୱାରେ ଭିକ୍ଷା ମାଗି, କେହୁ ଅପଣାର
ନାହାନ୍ତି ଧରଣୀ ପରେ, ହୋଇ କାଙ୍ଗାଳିନୀ
କେତେ ଦୁଃଖ ପାଉନାହଁ ତୁମେ ଅନିବାର ।
କ୍ଷୁଦ୍ର ଏ ଶିଶୁଟି ଲଗି ଭ୍ରମ ଅନ୍ଧ ପଥେ
କିଏ ଭିକ୍ଷା ଦିଏ କିଏ ଚାହେଁ ନାହିଁ ଲବେ
ଥିଲା ଘର ହୋଇଥିଲେ କେତେ ଲୋକ ସତେ
ଖଟୁଥାନ୍ତେ ପଦଯୁଗେ, ନିଖିଳ ଏ ଭବେ ;
ଅନ୍ନ ନାହିଁ, ବାସ ନାହିଁ ଚଳିଛ ଜୀବନ
ଥିବାଯାଏ ଜୀବନର ଅନ୍ତିମ ନିଶ୍ୱାସ
ଚାଲିବାକୁ ହେବ ଏଥି, ବିପଦ ବନ୍ଧନ—
ଦାରିଦ୍ର ଉପାଟଳ ସହୁ ମାସ ମାସ ମାସ !
ହାୟ ! ଏ ଜୀବନ ପ୍ରତି କେବଳ ମମତା
ସୀମାହୀନ ବିପଦରେ ଚାଲେ ଖୋଜି ପନ୍ଥା !

— ଚଲୋଷ —

## ଘଡ଼ୁଥିବ

ପୃଥିବୀର ଅଭିନାଦ ଗର୍ଭର ଦହନ
ଫିଙ୍ଗି ଦେଇ ଲକ୍ଷଙ୍କ ଠାରେ ସ୍ଖଳିତ ଜୀବନ,
ଆପଣାର ସୀମାହୀନ ବଡ଼ିମା ଦେଖାଇ
କି ଫଳ ଫୁଟିବ ତହୁଁ ଜାଣି ପାରେ ନାହିଁ
ପକ୍ଷପାତ, ଅବିଚାର, ଅନ୍ୟାୟ ଭିତରେ
ସ୍ଫୁରିତ ବିରାଟ ନହେବ । ଅନ୍ଧକାର ଘରେ
ଚିରଦିନ ରହୁ ରହୁ ଯେ ଆଲୋକ ପାଏ,
ସେଇ ଘନ-ଅନ୍ଧକାରେ ସେ ଯେ ଲିଭିଯାଏ !
ପ୍ରାଣର ଅତଳ ତଳୁ ଯେଉଁ ଅଶ୍ରୁ ଧାର
ନିସୃତ ହେଉଛି, ତାକୁ ଏଠି ସ୍ଖଳିବାର
ସାଧ୍ୟ କାର, ଏ ମାଟିରେ ? ପାରୁଅଛ ସ୍ଖଳି !
ପଡ଼ିବ ନିଷ୍ଠୁର ଦିନେ ହୋଇଣ କରୁଣ
ନାହିଁ ଥିବେ ଯାହା ସାଥି ଧରିନେବା ପାଇଁ
ପଡ଼ୁଥିବ ଘଡ଼ୁଥିବ ମହାଶୂନ୍ୟ ଗୃହଁ !

— ଏକସ୍ଖଳିଣ —

# ଯେବେ

ଦରିଦ୍ର କୁଟୀର ତଳ୍ପ ଅସିରୁଲେ ମାଆ
କେତେ ଦୀନହୀନ ତୋର ଅଙ୍ଗ ଦଂଶ ଅହା !
ସର୍ବାଙ୍ଗ ବଳତା ପର ଯାଇ ଅଛୁ ଶୁଖି
ଧରଣୀରେ ଯେତେକ ତୁହି ଅଛୁ ମହା ଦୁଃଖୀ
ବାକୁରୁ ବଜାରେ ବସି ଏଇ ରୂନା ମଞ୍ଚ
ପାଇଲେକ ଦ ପଇସା ଖାଇବୁ ତୁ ଭାତ !
ପିଲାଟିଏ, ହେଉ ଅଜା କେତେ ହୀନମାନ
ତୋ ଭବିଷ୍ୟ ଅଛୁ କବା ଶିଶୁ ସନମାନ
ତୋରେ ଘୂହଁ ଘୁହଁ ପାଟର ନାଇଁ କାପା ମୁହଁ !
କ ମହା ଧାଇଲେ ଦନ ନଜରୁ ଲେ ତୁହ୍ନ !
କେ' କଁପା ଜନମ ତତେ ଦେଲା ଏ ମାଟିରେ
ଦେଲା ସେତେବ କାଁପା ବୁଢ଼ାଙ୍କ ଲହ ନୀରେ
ଏତେ ଶିଶୁ ଥାଇ ବାଟେ ନଥିବାର ପର !
ମର ମର ଯାଏ ସେତେବ ତୋ ଜୀବନ କଲା !

— ବନ୍ଧୁଲଶ—

## ଗୋଲାପ

ହେ ବନ୍ଧୁ, କବିର ମତେ ଲେଖିବାର ପାଇଁ
ଗୋଟିଏ କବିତା ଏଇ ଗୋଲାପଟିର ସ୍ତୁତି !
ତରୁ ବଲ୍ଲୀ ଫୁଟି ଯେତେ ହୁଏ ଢଳ ଢଳ
ଐଶ୍ୱର୍ଯ୍ୟ ଅନନ୍ତେ ଯେତେ ନିସୃତ ଉଚ୍ଛଳ
ତରୁଣୀ ବଧୂଟି ପରି, କିନ୍ତୁ ବନ୍ଧୁ, ମମ
ଦେଖି ଏଇ ଗୋଲାପଟିର ମୋ ଅନ୍ତର ମନ
କାନ୍ଦ କାନ୍ଦ ହୋଇଯାଏ, କେତେ ପୁଷ୍ପ କଳି
ନ ଫୁଟୁଣୁ ଯାଉଛନ୍ତି ଝଲବଲେ ଝଡ଼ି ।
ହତାଶ ନୟନେ କେତେ ରକ୍ତଚନ୍ଦ୍ର ସ୍ତୁତି,
ଦରିଦ୍ର ଜୀବନେ ତାଙ୍କ ଅଙ୍କ ହେବ ନାହିଁ —
ସୌଭାଗ୍ୟର ଅଭ୍ୟୁଦୟ, ଅଜ କେତେ କାବ
ଜୀବନ ଜୀବନ ପରି ଭୁଟେହ ଏକବାର
ପଡ଼ନା! କାହାର ଆଖି ସେମାନଙ୍କ ପରେ
ଏ ଗୋଲାପ ଫୁଟିଥାନ୍ତା ସବୁରି ଅନ୍ତରେ ।।

— ଟେନ୍ସାଲିଣ —

ଆହ୍ଲିପି

# ଯୁଗ ଯାତ୍ରୀ !

ହେ ମୋର ଯୁଗର ଯାତ୍ରୀ, ତୁମ ଯାତ୍ରା ପଥେ
କାହାକୁ ଦେଖୁଛ ଆଗେ ? ଅଗ୍ନି ଭୂଜ ସଙ୍କେତ
ଚାଲୁଛ କି ? ଅବା ତୁମେ ମାତିଅଛ ଖାଲି
ପ୍ରାଣହୀନ କଳ୍ପନାରେ । ଚତୁର୍ଦ୍ଦିଗେ ଖାଲି—
ହେମନ୍ତ ଯାଉଛି ମାଡ଼ି ଶ୍ୟାମଳ କେଦାର
ଶବ ଯାହା ଶୋଭୁଥାନ୍ତା । ବିକଳ କାଙ୍ଗାଳ
ହେମନ୍ତ ଦଂଶୁଛି ଦେଖ । ତୁମ ବକ୍ଷତଳେ
ମଣିଷର ରକ୍ତ ଅଶ୍ରୁ । ତୁମ ନୟନେ ଜଳେ,
ସତ୍ୟର ବିଦ୍ୟୁତ ଶିଖା । ତୁମ ଦେହେ ମନେ
ସିଂହର ବିକ୍ରମ ଫୁଟେ । ତୁମେ ଜଣେ ଜଣେ
ଗୋଟିଏ ଗୋଟିଏ ସୂର୍ଯ୍ୟ । ତୁମକୁହିଁ ଧରି
ଦିଗ୍‌ବଳୟ ବ୍ୟାପୀ ଏ ଯେ ଶ୍ୟାମା ବସୁନ୍ଧରୀ,
ଅଗ୍ରେ ଉଠିବ ନାଚି । ଚାଲ ପଥ ଚାଲ !
କାଟି କାଟି ଚତୁର୍ଦ୍ଦିଗୁ ନିବିଡ଼ ଅନ୍ଧାର !

— ରଜସ୍ୱଳଣ —

ଅସ୍ତଲିପି

## ଖୋଲି ଦେଖ

ସେ ମୋତେ ଦୁଃଖ ଲାଗେ ସେବେ ପଡ଼େ ମନେ
ସେ ଦିନ କି ଭଲ ଥିଏ ଈଶ୍ୱର ନିର୍ମମେ
ମୋ ତୃଷ୍ଣା ବାସନା ସବୁ ଦୂ   ଫିଙ୍ଗିଦେଲେ
ମୁଁ ଯେତେ ହେଲେ ଉଡ଼ିବ କିଏ, ନୁହେ ତାଙ୍କ ମେନେ
ଛୋଟେଣି ଦ୍ୱନ୍ଦ୍ୱ ଆପଣାର । ସମସ୍ତ ଗୋଷ୍ଠୀର
ଗୋଟିଏ ଅପରିଷ୍କୃତ କୋଠରୀରେ ବାନ୍ଧି
ରଖିଲି ଚେଟେଛାଟି ଦିନ, ସଦା ଓ ସିମ୍ଭୂ
ଅଳନ୍ଦୁ ତିର ସେ ଘରଟି ରହୁଥାଏ ପୂର୍ବ
ସେ ଦାରିଦ୍ର୍ୟ ଖାପେ ରହି ଭାବୁଥାଏ ମନେ
ଅଶ୍ରୁସିକ୍ତ ହେଉଥାଏ ନେନି କ୍ଷଣେ କ୍ଷଣେ
'ହେ ମନୁଷ୍ୟ ! ଖୋଲି ଦେଖ ତୋର ବୁକୁ ତଳେ
ବହୁଛି ଜାଗ୍ରତ ହୁଏ ଅନନ୍ତ ନିର୍ଝର
ସେ ନିର୍ଝରେ ଭିଜୁଥାଏ ସାରା ବିଶ୍ୱ ପଥ
ନା ଗୁଲ୍ମ କିପାଇଁ ? ଦାଣ୍ଡ ଦୁଃଖୁ ଅବିରତ' ।

— ପଞ୍ଚସ୍ମୃଳଣ —

ଅଗ୍ନିଲିପି

## ଶାସକ-ଶାସନ

ଶାସକ ଆସନେ ବସି ନ୍ୟାୟ ଓ ଅନ୍ୟାୟ,
ନ ବୁଝି ଯେ ଇଚ୍ଛାମତେ ଦେଇଯାଏ ରାୟ,
କାତର ଦେଶର ସେ ନଗ୍ନ ମହା ସନ୍ତାନ
ତାହା ତହୁଁ ବଳି ନାହିଁ ମାରନ୍ତକ ପ୍ରାଣ !!
କି ବୁଝିଲ କି ବୁଝିଲ ରାଜକର୍ମଚାରୀ
ଜଣକର ଗୁପ୍ତ ଶକ୍ତି ବଡ ହେଲା ଭାରି !
ତାରି ବଳେ ସେ ଯେ କେତେ ମହା ନିର୍ଦ୍ଦୋଷେ
କରିଗଲ ଅତ୍ୟାଚାର ଦେଖିଲନି ଥରେ
ବିଚାର ଆସନେ ବସି କି କଲ ବିଚାର
'ତୁମେ ଯେତେକ ମନ୍ତ୍ରୀମନ୍ତ୍ର ମହା ଅତ୍ୟାଚାର
ନିର୍ଦ୍ଦୋଷ ନିଶ୍ୱାସେ ତୁମେ ଯିବ ପୋଡ଼ିଜଳି
ଶାସକ ଆସନ ନୁହେଁ ପୁଷ୍ପ-ଶଯ୍ୟା ପରି,
ବିଳାସ ଓ ସ୍ୱେଚ୍ଛାର ଲୀଳା ନିକେତନ
ଖଣ୍ଡାଧାର ପରି ସେ ଯେ ଅତି ତୀକ୍ଷ୍ଣତମ !

— ଛୟାଳିଶ —

ଅହ୍ଲାସ

## ବଂଚିବ ବିରାଟ ହୋଇ !

ଗଧ ଓ ଘୁଷୁରି ସବ ବଂଶ ରହୁବାର—
ସ୍ୱପ୍ନ ମୁହିଁ ଦେଖିନାହିଁ ବିଶ୍ୱେ ଏକବାର
ମୁଁ ଏକ ସ୍ୱାଧୀନ କ୍ଷୁଦ୍ର ଜୀବ ଧରଣୀର
ଚାହେଁ ମୁହିଁ ଚଳିବାକୁ ନୋହି ନତ ଶିର !
ଚାହା ପାଖେ; କିଏ ମୋତେ ଦଳେ ପଦାଘାତ
କୃଷ୍ଣଫଣା ତମସ ସମ ଉଠିବି, ଉଦ୍ଧତ—
ବିରାଟ ଧରଣୀରେ, ପେଣ୍ଡରେ କେଳାର
ଅହ୍ନରିଜ ଅର୍ଦ୍ଧମୃତ ହୋଇ ରହୁବାର
ପର ମୁଁ ବଞ୍ଚିବା ପାଇଁ, ଚାହେଁନା ଜୀବନେ ।
ଜୀବନ ପଥର ଲୁହେ ସେ ଯା ଭଗ୍ନ ମନେ,
ଯୁଆଡ଼େ ଜୋର ଦେଲେ ଯିବ 'ଚଢ଼ି ଗଡ଼ି
ସେଇଁଠି ରଖିଲେ ତହିଁ ରହୁଥିବ ପଡ଼ି
ମୁଁ ଏକ ବିରାଟ ଶକ୍ତି ବିରାଟ ଉଦ୍ଗମ
ବଞ୍ଚିବ ବିରାଟ ହୋଇ ଯାବତ ଜୀବନ ।

— ସତସ୍ଲଲଣ —

ଅନୁଲିପି

# ମନେରଖ

ରହୁଛ ସହସ୍ର ହୋଇ ବନ୍ଧୁ ତୁମେମାନେ ;
ମୋର ନସଇ ପ୍ରିୟ ପରିଚିତ ଅନ୍ତୁସ୍ଥ ନେନ !
ଜଣକର ଶାସନର କଠୋର ପୀଡନେ,
ଅପରାଧୀ ବନ୍ଦୀସମ ବନ୍ଧନେ ମନନେ—
ଫୁଟିଛି ନା ସ୍ୱାଧୀନ ଆଶା, ଡ଼ର ଭୟ ଭର
ସେଠେଙ୍କ ଦେଇଁ ପ୍ରାଣହୀନ ମହାରାକ୍ଷସର
ଭବନେ ଭାଷ୍ଟିଚ ଧନ, କରିଦେଲେ ହାଏଁ
ସାଜିଚ ଗୁନଅ ହୋଇ, ଦଣ୍ଡନାଇଁ ରାହା—
ପଶୁ ପାଖେ ପଶୁ ହୋଇ, ରହୁଚ କେବଳ
ନାରଖାଇ ଭରି ତୁମ ଜୀବନ ସୁନ୍ଦର !
ଭୟ ଭର ମରିବାଠୁ ବିଦ୍ରୋହ ଭିତରେ
ଝାସି ଏ ଜୀବନଟିକ, ବରଂ ଅନନ୍ଦରେ
ମରି ଥିବେ । ସେ ମରଣେ ରହୁଚ ସମ୍ମାନ
ମନେ ରଖ ତୁମେ ତୁଚ୍ଛ ପଶୁର ସନ୍ତାନ !

— ଅଠସ୍ଲାଶ —

ଅଞ୍ଜଳି

# ପ୍ରଣତି ✓

ତୁମର ହୃଦୟେ ମୁହିଁ ଜଣାଏ ପ୍ରଣତି
ଯିଁ ହପର ଯେଉଁ ଧନ ସବୁ ଲଭ ଗତ
ବର୍ତ୍ତମାନ ଭବିଷ୍ୟତ ସମସ୍ତ ବିସ୍ମର
ଅତ୍ୟାଗ୍ନିର ବହ୍ନିଛଟରେ ଥିଲ ସୃଜି କରି !
ସେଇ ଶ୍ରେଷ୍ଠ ଅନୁଷ୍ଠାନେ, ଦେଖିଚି ତୁମ୍ଭର
ଭିତର କି ଅଗ୍ନିଭରା ଶକ୍ତି ସାହସର !
ସତ୍ୟ ଲକ୍ଷ୍ୟ ଫାସି ବରଂ ପାଇବା ଥା'ଭଲ
ଅସତ୍ୟର ଭକ୍ତ ହୋଇ ବଞ୍ଚେ ନିରନ୍ତର
ହେଉଥିବା କଳବଳ ଭିତରେ ଭିତରେ
ଏ ତନ୍ତୁଁକ ବଡ଼ ବ୍ୟାଧି ଅଛି ଜଗତରେ !
ବନ୍ଦି ହେ ପାଇର ତଡା ଖୋଭ ନାହିଁ ଛଟେ
ଯେଉଁଠି ରହିବ ତୁମେ ମହାଧରଣୀରେ
ଫୁଟିବ ତୁମର ଗନ୍ଧ । ତୁମର ଅନ୍ତର
ଚିରଦିନ ଅମୃତରେ ଖେଳ ଢଳ ଢଳ !

— ଅଣସ୍ନଶ —

ଅଗ୍ନିଲିପି

## ଜାଣି ନାହିଁ ପାରେ

ପଶ୍ଚାତ ରାଜତ୍ୱ ଆଜ ପଶୁର ଶାସନ
ଯେତେ ଦିନ କରିଥିବ ଧରଣୀ ଅଚ୍ଛନ୍ନ
ଧରଣୀର ପ୍ରତି କୋଣ୍ ଉଷ୍ମ ଲହୁଧାର
ଝରୁଥିବ, ତା'ର ଶେଷ ନାହିଁ କେବାର !
କୁଟୀରେ କୁଟୀରେ ଶୀଲ୍ ଦା ହୁତାଶ ବାଣୀ
ପ୍ରତି କଣ୍ଠୁ ଫୁଟୁଥିବ ନିତ୍ୟ ଦରାଯାମୀ
ଜୀବନର ସାରସତ୍ତ୍ୱ ଯାଉଥିବ ମରି,
ଶ୍ମଶାନରୁ ଚଳି ଏଇ ଧରଣୀ ସୁନ୍ଦରୀ
ଦେଖୁଥିବ ହତଶିରୀ ! ହେ ବନ୍ଧୁ ସକଳ !
ବୁଝି ମୁଁ ପାରୁଚି ତୁମ ଅଣ୍ଡି ଓ ବିକଳ
ଦେଖି ମୁଁ ପାରୁଛି ତୁମ ସୁନ୍ଦର ଜୀବନ
ଝାଉଁଳି ପଡ଼ିଚି ଲଭି କ୍ରୁର ନିର୍ଯ୍ୟାତନ !
ଜୀବନକୁ ମାରି ହାଣି ଧ୍ୱଂସ କରିବାରେ
କିବା ବଳ ପଣ ତହିଁ ? ଜାଣିନାହିଁ ପାରେ

— ପଲ୍ଲଶ —

ଅମ୍ବଳନ୍ଦ:

## ଯାହା ତୁମ୍ଭେ ହୁଅ

ପୁରେ ପୁରେ ସଂସ୍ଥା, ସଂସ୍ଥା ପ୍ରତି ଅନୁଷ୍ଠାନ
ଜଣେ ସ୍ନେହ କାହିଁ ପାଇଁ ଦଳି ଅନ୍ୟ ପ୍ରାଣେ
ଠିଆ ହେବ ଶିର ଟେକି । ତା' ପରେ ବାଣ
ଜଡ଼ ମଦ୍ଧା ଧରଣୀରେ ଘୋର ଅକଲ୍ୟାଣ
ମାନିବାକୁ ବାଧ୍ୟ ସବେ । ତାପରେ ସ୍ୱାତନ୍ତ୍ର୍ୟର
ଦେବାହିଁ ଅନ୍ୟାୟ ହେବ ହେବ ଅସୁନ୍ଦର
ଏଇ କଣ ମାନଦଣ୍ଡ ମାନବିକତାର ?
ଏଇ କଣ ଶାସନର ଶ୍ରେଷ୍ଠ ଭାରବାର ?
ମୁଁ ପଲ୍ଟରେ ଧରଣୀରେ ଯାହା ତୁମ୍ଭେ ହୁଅ
ମନୁଷ୍ୟ ତୁମେତ ନଷ୍ଟେ ଅଭ କିଛୁ ନୁହ
ମନୁଷ୍ୟର ହାସ୍ୟ ଅଶ୍ରୁ, ମନୁଷ୍ୟର ମାନ
କପାଁ ତ୍ରେମ ବ୍ରୁଙ୍ଗ ନାହିଁ ଦିଅ ନାହିଁ ସ୍ଥାନ
ଯେଉଁ ଅନୁଷ୍ଠାନେ ଯେତେ ସେ ଉପରେ ରଙ୍ଗ
ମନୁଷ୍ୟକୁ ମନୁଷ୍ୟର ପର କଥା କହ ।।

— ଏକାବନ —

## ଚଲୋଡ଼ା

•

ମନୁଷ୍ୟ ମନୁଷ୍ୟ ରୁହେ ପୃଥିବୀ ଉପରେ !
ବୁଝିବ ଯେ ସୁଖ ଦୁଃଖ, ନିଜ ବାନ୍ଧବରେ
ପୋଛି ଯେ ଅଣିବ ଲୁହ, ଅପଣାର କରି,
ହସି ହସି ପାରିବ ଯେ ଅପେ ଅପେ ମରି
ମନୁଷ୍ୟ ମଙ୍ଗଳ ଲାଗି, ଯାର ଅବସ୍ଥିତ,
ଚତୁର୍ଦ୍ଦିଗେ ଶୁଣି ଯିବ, କଲ୍ୟାଣ ଓ ପ୍ରୀତ ;
ମନୁଷ୍ୟ ସ୍ନେହନା କେତେ ସମ୍ମାନ ସହ
ବଧି ରହିବାକୁ ପାଇ ଲକ୍ଷ ଅନୁଗ୍ରହ·
ଭା ଫ[illegible] ଭ[illegible]ୋର ହାତୁ ନିମିଷକ ପାଇଁ
ପଶୁ ସମ ଭା ଦୁଆରେ ଚିର ଦିନ ଯାଇ
ବନ୍ଧା ହୋଇ ରହିବାକୁ ମଥା ନତ କରି
ଡ଼ର ଭୟେ ସବୁ ଦିନ, ସହି, ସହି, ସହି.
ମନୁଷ୍ୟ ମନୁଷ୍ୟ ରହୁ ମନୁଷ୍ୟ କେବଳ
ରଚିବାକୁ ପୃଥିବୀରେ ଅନନ୍ଦର ଘର ।

— ରାବଣ —

ଅମ୍ଳଲ୍ଷି

# ସେ ଦୁଃସ୍ୱପ୍ନ ନାଇଁ ଜାଗୁ

ଜୀବନକୁ ଶପି ଧର ବଞ୍ଚିବାର ଲାଗି
ଦୁର୍ବାର ଆକାଙ୍କ୍ଷା ଉଠେ ଯାହା ବକ୍ଷେ ଜାଗି
କି ମଧୁ ସମ୍ପଦ ସେଇ ପାଏ ଧରଣୀରେ
ତାହାଁକ ବା ବଞ୍ଚି ରହେ ? ମହାକାଳ ନୀରେ
ଲୁହା ଭାସି ଯିବା ନାକି ଶତ ଶ୍ରେୟସ୍କର
ସେଇ ଆକାଙ୍କ୍ଷାରେ ମୁହିଁ ନାଚେ ନିରନ୍ତର !
ସେହି ବାନ୍ଧି ଏ ଜୀବନରେ ନିମିଷକେ ପାଇଁ
ସେ ଦୁଃସ୍ୱପ୍ନ ନାଇଁ ଜାଗୁ, ମନେ କଏ ତାହିଁ
ଭରନ୍ତୁ ବସ୍ତ୍ର ନା ନିନ୍ଦା, ଦ୍ୟନ୍ତୁ ଅପମାନ
ଝହନ୍ତୁ ଅନ୍ଧାରତା ମୁହିଁ, ପୃଥ୍ୱୀ ପ୍ରତ ସ୍ଥାନ
ମୋହ ଲାଗି ହୋଇ ଉଠୁ ଦୁର୍ବହ ନରକ
ଥାଥାଏ ମୋ ଓଠେ ହାସ ମରମେ ପୁଲକ
ଜାଗୁଥିବ ପ୍ରତ ନିତ ! ଦରିଦ୍ର ଜୀବନେ
ମଥା ନତ କର ମୁହିଁ ଭୁଲି ନାଇଁ କ୍ଷଣେ !

— ତପନ —

ଅଞ୍ଜଳି

## କାଷ୍ଠ କୁଟୀରେ

ଏ କାଷ୍ଠ କୁଟୀରେ ମୁହିଁ ଦରିଦ୍ର ଅତିଥ
କାମ ବଧୂ ତୁମ୍ଭେ ସତେ, ଭଗ୍ନୀସମ ପ୍ରୀତ —
ସେନେହ ମମତା ଢାଳି, ଚେଲିଙ୍ଗ ବାଣୀରେ
ପତ୍ନୁବଳ ଅଜ ଅମ ଏ କ୍ଷୁଦ୍ର କୁଟୀରେ
ରହିବାକୁ ହେବ ଜନମ. ଅତିଥିଙ୍କ ଅଭ ?
କାହା ଘର ପୁଅ ତମେ ଅସିଅଛ କାହିଁ
ସୁଦୂର ଗାଇଁର ପାରୁ, ହଲଇ ବଦନ
ଛଣୋଛଲ୍ ପାରବ ନ ରହ କଦାଚନ
କ୍ଷମା କର ହେ ଅତିଥି ! ସୁଧା ଅଭ ପାନ
ଚାଡ଼ି ଦେଲ ! ପହିଲା ନାହିଁ ଏ ତୁମ ସମାନ
ଶ୍ରେଷ୍ଠ ବୋଲି କହିଲ ସେ ମନ ଦୁଃଖ କରି
ଅସିବ ହେ ଅନ୍ୟ କେବେ ଲଟିବ ନ ପାଶୋରି —
ତୁମ୍ଭେ ସେ ରହିଚ ମୁହିଁ ଅଡ ହେବା ଯାଏଁ
ମନୁଷ୍ୟ ପ୍ରେମର୍ ବଳ ବଡ଼ କବା ଥାଏ !!

— ରଭବନ —

ଅମ୍ଳାନ

## ପ୍ରତ ପନ୍ଥ

ଭୁଲିଯାଅ ବନ୍ଧୁ ଯେବେ ପାଇଥିବ ବ୍ୟଥା
କର୍ତ୍ତବ୍ୟର ପଥେ ଯେବେ ଭୁଲିଛ ସର୍ବଥା
ହୋଇ ନିତ୍ୟ ନ୍ୟାୟ-ନିଷ୍ଠ ହୋଇ ସତ୍ୟବ୍ରତ
ସେ ଏକା ଗଢ଼ିବ ତବ ସ୍ୱର୍ଣ୍ଣ ରାଜ ପଥ ।
ଏ ଧରଣୀ ହେଉ ଯେତେ ଜଟିଳ କୁଟିଳ
ସୀମାହୀନ ବାଧା ଦେଉ, ଚାଞ୍ଚଳ ଅଚଳ
କରୁ ଧୃତ ପଦ କ୍ଷେପ, କିବା ପରବାୟ
ସତ୍ୟର ଅଗ୍ନିରେ ଯେବେ ତୁମ ସମୁଦାୟ
ଦେହ ମନ ଉଦ୍ଭାସିତ । ତୁମ୍ଭେ ଏଇ ମାଟି
ସଭିଏ ଭୁଲିଯା ଆପଣ ହୋଇ ବନ୍ଧୁ ସାଥୀ
ପରସ୍ପରର ନାଇଁ ରଖି ଭେଦ ଦ୍ୱନ୍ଦ୍ୱ ତଳେ
ଭିତର ପ୍ରାଣର ମାୟା ନିଖିଳର ନୀଡ଼େ ।
ଏ ପଥେ ପଥିକ ଯେବେ ତୁମେ ବନ୍ଧୁ ମମ
ଭୁଲୁ ଶିର ଦେଉଛି ମୋ ସେନେହ ପରମ ।

— ପଞ୍ଚାନନ —

ସ୍ୱଳ୍ପ

## ହତଭାଗ୍ୟ ସେଇ

ମୁଁ ଯେ ଶ୍ରେଷ୍ଠ କବି ଜଣେ ନିଖିଳ ବିଶ୍ୱର
ଝରଣାର ସ୍ରୋତ ପରି ମୋ ଅନ୍ତର ତଟ
କବିତା ଆସଇ ଝରି ଦିନ ଦିନ ଧରି
ତହିଁରେ ମୋ ମନ ଉଠେ ଆନନ୍ଦରେ ଭରି !
କବିତା ମୋ ଜୀବନର ଏକମାତ୍ର ବ୍ରତ
କବିତା ମୋ ଜୀବନର ପରମ ଆଧାର
କବିତା ଭିତରେ ମୁହିଁ ମୋ ଭିତରେ ସିଏ
ଅନନ୍ତ ଯୁଗରୁ ଛନ୍ଦ ବନ୍ଧା ଅଛୁ କହେ !
ଏ ଜନମେ ଆଉ ଜନ୍ମେ ଶତ ଜନ୍ମ ପରେ
ଗାଉଥିବି ସୀମାହୀନ କବିତା ମୁଁ କବି
କବିତାରୁ ଯେ ଅମୃତ ପାଇବି ଧରାରେ
ସେଇ ମୋର କୋଟିନିଧି କାଳେ କାଳେ କାଳେ !!
ହତଭାଗ୍ୟ ନୁହେଁ ମୁହିଁ, ହତଭାଗ୍ୟ ସେଇ
କବିତାରେ ପ୍ରାଣକୁ ଯେ ଗଢ଼ି ନାହିଁ ନେଇ !

— ସ୍ୱପନ —

# ଏଇ ବିଦ୍ୟାପୀଠେ

ବାଲ୍ୟର ବୟସେ ଦିନେ ଏଇ ବିଦ୍ୟାପୀଠେ
ପଢ଼ୁଥିଲି ପାଠ ମୁହିଁ ମନ ସନମାନେ
ଆଜି ସେତେବ ଭୁଲିଯାଏ, ନାଚିଯାନ୍ତି ପ୍ରାଣେ
କେତେ ବନ୍ଧୁ କେତେ ସଖା ସେ ଶିକ୍ଷକମାନେ !
ଏଇ ଠାଙ୍ଗି ଲଟାବୁଦା ଏଇ ପଲ୍ଲୀପୁର
ଏ ପାହାଡ଼ ଏ ପ୍ରାନ୍ତର ଏଇ ପଥ ଘାଟ
ସବୁ ମୋର ପରିଚିତ ସବୁ ଆପଣାର
ଖୋଜିଲେ ଏମାନ ନେଇ ବନ୍ଧୁଆସେ ଧାର
ଏ ଯେ ମୋର ଜୀବନର ଅତୁଳ ସମ୍ପଦ
ରହିଛି ମୋ ବୁକୁ ତଳେ ସ୍ୱର୍ଣ୍ଣଦୀପ ପରି
ସ୍ମରିଲେ କୁଟୀରେ ବସି ଏକାନ୍ତେ ଏମାନ
ସରସି ଉଠଇ ମୋର ବିଶୁଷ୍କ ପରାଣ
କେତେ ବଇଭବ ମୋର ଏ ମାଟିରେ ନାହିଁ
ଆର୍ଦ୍ର ହୋଇଉଠେ ହୃଅ କେତେ କାହାପାଇଁ !

— ସଦ୍ଭାବନ —

## ହେ ବାପୁଜି !

ହେ ବାପୁଜୀ ପୃଥିବୀର ଅମୃତ ଜୀବନ !
ଲକ୍ଷ କୋଟି ମାନବର ବନ୍ଧୁ ସନାତନ !
ନିଜକୁ ଦେଇଚ ଢାଳି, ମାନବର ପାଇଁ;
ମାନବର ସୁଖ ଶାନ୍ତି ସ୍ୱାଧୀନତା ନାଇଁ—
ଯେଉଁଠାରେ, ସେଠି ତୁମେ କରିଚ ସଂଗ୍ରାମ;
ନୁହେ ଖଣ୍ଡା ତଲୱାରେ, ଆପଣାର ପ୍ରାଣ—
ପ୍ରତିଶକ୍ତି ଦେଇ ଦେଇ ! ଦୁଃଖ କଷ୍ଟ ସହି;
ପ୍ରାଣର ବିରାଟ ଶକ୍ତି ତହୁଁ କିଛି ବଳି,
ବିଶ୍ୱ ଶାନ୍ତି ପାଇଁ ବିଶ୍ୱେ, ପାରିଚ ଦେଖାଇ;
ଆଣିଚ ବିଜୟଲକ୍ଷ୍ମୀ ଏଇ ମାଟିପାଇଁ ।
ତୁମରି ଏ [illegible] ଦା[illegible] ତୁମ ପୁଣ୍ୟ ଛବି,
ହୃଦୟର ପ୍ରତି ତନ୍ତ୍ରେ ମୁହିଁ ଅନୁଭବି,
ତୁମ ପଦେ ଢାଳିଦିଏ ମୋର ନମସ୍କାର !
ପ୍ରାଣବାନ୍ କର ! ଥିବି ବିଶ୍ୱେ ଯେତେକାଳ !

# ଗୃଲେ

ବହୁବାର ପଚାରିଛି ପ୍ରଶ୍ନ ଆପଣାରେ
କିଏ ମୁହିଁ ଆସିଅଛି ବିଶ୍ୱ ପଥଧାରେ—
କାହିଁପାଇଁ ? କିଏ ମତେ ଦେଇଛି ପଠାଇ
କେଉଁ ଅନନ୍ତରେ କେବେ ଯିବି ମୁଁ ମିଳାଇ !
ପୁଣି କେବେ ଜନ୍ମ ହେବି ଏଇ ବସୁଧାରେ
ସେ ମୋନର ଅଣିର ପାଳ ସୁଖ ଶରଧାରେ,
ବର୍ଷ ବର୍ଷ ଯୁଗ ଯୁଗ କାଳ କାଳ ଧରି
ଅବା ଏଥି ଫେରିବନି ? ସେ ଚିହ୍ନ ମୋହରି
କେଉଁଠି ରହିବ କାହିଁ ? ଅବା ସବୁ ମମ
ଏକବାର ନିଭିଯିବ ? ସମସ୍ତ ସପନ—
ପରି ମତେ ଲାଗେ ଖାଲି ! ଦୂର ଚକ୍ରବାଳେ
ଯୁହିଁ ରହେ । ମନେ ମନେ ହେଟେନ୍ତି ଖାଲି ଭାବେ ।
ଲୋଡ଼ା ନାହିଁ ଏ ସକଳ ଜାଣିବାର ପାଇଁ
ସ୍କୁଲେ ମୋର ଯୋଗାଡ଼ଟିକ ଫୁଟାଇ ଫୁଟାଇ !!

ଆମ୍ଲପି

## ଗାଁଆ ବୋଉ

ହେ ନିଃସ୍ୱ ଜନନୀ ମୋର ହେ ଗାଁଆ ବୋଉ ।
ଡାଲପିଠା କରି ମତେ ଖାଇବାକୁ ଦଉ
ତୁମ ଘରେ ଯାଇ ଯେବେ ବାଳୁତ ବୟସେ
ଖେଳୁଥିଲି କେତେ ଖେଳ ପରାଣ ହରଷେ ।
ମୁହଁ ଖାଏ, ଖାଏ ତୁମ ଦରିଦ୍ର ଗାଁଆ
ଏ ସକଳ ଦେଖି ତୁମ ପୂରିଯାଏ ହିଆ
ଥଉ ଖଣ୍ଡେ ମତେ ଦେଉ ଆଦରେ ବଢାଇ
ଥର ଖଣ୍ଡେ, ଅଧା ସରିଥାଏ କିବା ନାହିଁ ।
ତୁ କେଉଁ ସରଗେ ମାଆ ରହିଲୁଣି ଯାଇ
ସେ ସ୍ମୃତିଟି ମୋର ମନେ ପଡ଼େ କାହିଁପାଇଁ ;
କେତେ ଭଲ ମନ୍ଦ ମୁହଁ ଖାଉନାହିଁ ଏବେ ।
ସେ ଡାଲ ଚକୁଳି ପିଠା ପାଇବି କି କେବେ?
ଦୀନ ଦୁଃଖୀ ଘରେ ଯେଉଁ ନିଧିଟିକ ଖେଳେ ;
ବଡଲୋକଙ୍କ ଘରେ ମିଳିବ କି ?, କେତେ ବେଳେ ?

## କବି ଗୋପାଳକୃଷ୍ଣଙ୍କ ପ୍ରସ୍ତମୂର୍ତ୍ତି ଦର୍ଶନେ—

ତୁମର କୁଟୀରେ ଆଜ ତୁମର ସମ୍ମୁଖେ
ଯହିଁ ମୁଁ ରହିଛି କବି ! ତୋର ଚକ୍ଷୁରେ
ବନ୍ଧୁ ମୋ ଖାଇବା ଲାଗି ଦେଲେଣି ତ ଡାକ
କାହିଁକି ହେଉନି ଇଚ୍ଛା ଛାଡ଼ି ତୁମ୍ଭ ପାଖ—
ଯିବା ପାଇଁ ଷଟଣି ହେଲେ ଅନ କେଉଁ ଅଢ଼େ—
ଏଇ କ୍ଷୁଦ୍ର ନଗରର ଯହିଁ ସ୍ମୃତିଧାରେ
କେତେ ହର୍ମ୍ୟ ରହିଅଛି ଶିର ଟେକି ନଭେ
ସ୍ପର୍ଶି ଖେଳି ପ୍ରାଚୁର୍ଯ୍ୟର ମୋହନ ଗୌରବେ
କେତେ ଧନୀ ମାନୀ ଜ୍ଞାନୀ ନାହାନ୍ତି ଏଠାରେ
କାହାର ତ ଆକର୍ଷଣ ମୋ ଅନ୍ତର ଦ୍ୱାରେ—
କରେନି ଆଘାତ ଲବେ ! ବିମୁଗ୍ଧ ନୟନେ
ପ୍ରେମରେ ଯହିଁ ତ କମ୍ପା ? ବର୍ଣ୍ଣେ ଯେଉଁ ଭଣ୍ଡେ
ତତ୍ତ୍ୱେ ଦଏ ସୀମାହୀନ ଆନନ୍ଦର ମାତ୍ରା
ତାହା ତହିଁ ବଳି କଏ ଏତେ ପ୍ରିୟ ଆହା !

ଅଞ୍ଜଳି

## ଫେରଯାଅ

ଧରଣୀର ଏ କଠିନ ସଂଗ୍ରାମ ଭିତରେ
ବୁଡ଼ିଗଲେ, ହଜିଗଲେ ଅନ୍ତରେ ଅନ୍ତରେ—
ବେଦନାର କ୍ଷତ ହେଉ ନାହିଁରେ କିମ୍ବା କହ ?
ଲାଗେ କିମ୍ବା ତଉଡ଼ଗ ମୋରେ ଦୁର୍ବିସହ ?
ବଡ଼ କଷ୍ଟ ବଡ଼ ଦୁଃଖ ଏଥୁ ବର୍ତ୍ତିବାର
ଏ ଧରଣୀ ଭିତରେ ଯେ ଅନନ୍ଦ ସଂସାର—
ରହିଛି ଅନନ୍ତ ମାୟା ଧରି ଜାଲ ଜାଲ
ସେ ଲାଗି ନୟନ ମୋର ଅନ୍ତର ବାହାର
କେବଳ ଉଦାସୀନ ହୋଇ; ହସି କାହା ତୁଲେ
କେମନ୍ତେ ହେବନି କଥା ? ପାଖେ ରହି ଦୂରେ—
ରହିବାର ସବୁ କେତେ ଦେଖାଇବ ଠାଣି ?
ଆପଣାକୁ ପର କରି କେତେ ଜାଣି ଜାଣି,
କରିବି ମୁଁ ହତାଦର ? କୁଟୀଳ ସଂସାର
ଫେରଯାଅ ଫେରଯାଅ ଯାଅ ଏକ ବାର !

— ବାଷଠି —

## ତଥାପି

ଘରଟି ଯାଇଛି ଭାଙ୍ଗି ପଡ଼ିଅଛି ଭିତ୍ତି
ତଥାପି ସେ ମତେ କିମ୍ପା ଲାଗେ ଏତେ ପ୍ରିୟ ?
କେତେ ବନ୍ଧୁ କେତେ ସଖା କଳ କୋଳାହଳ
କେତେ ଦଅ ନିଅ କେତେ ସେନେହ ଆଦର
ସମସ୍ତ ଯାଇଛି ଚାଲି, ସେ ଯହୁଁ ଘରର
ଯାଇଛନ୍ତି ମରହଜି କେ'ବା ଦୂରସ୍ଥର
କେଉଁ ଥାନେ ରହି ହେଉଅଛି ନାରଖାର ।
ଏ ଭିତ୍ତି ପଡ଼ିଛି ଏଥି, ଅତୀତ ସମ୍ଭାର
ପ୍ରତି ମାଟି କଣିକାରେ ଯେତେହେଁ ଅବା ବନ୍ଧୁ,
ମୁଁ ଚାହିଁଲେ ମୋତେ କେତେ କଥା ଯାଏ କହୁ ।
ଭୁଲିଛି ଚଦାଖୁରି ମୁହିଁ ତନ୍ନ ତନ୍ନ କରି
ଜା' ତୁଲେ ହେଉଛି କଥା କି ସଗିଗ ଭରି ।
କିଛି ତ ଲୁଅଟେ ନାଇଁ, ତଥାପି ଅନ୍ତର
ପାଉଛି ତାହାର ସ୍ପର୍ଶ ସୁଧା ଢଳ ଢଳ ।।

— ତେଷଠି —

ଆତ୍ମଲିପି

## ମିଶି ଯାଏ 

ଅନନ୍ତ ଆକାଶ ଏଇ ଅନନ୍ତ ପୃଥିବୀ
ଏ ମହାସଂପଦ ଛାଡ଼ି କେଉଁଆଡ଼େ ଯିବି—
ଯହିଁ ଚାହିଁ ଦିଏ ତହିଁ ଦିଶି ଦିଶି ଭରି
କି ଅମୃତ ଚଇତନ୍ୟ ଯୁଗ ଯୁଗ ଧରି
ରହୁନାଇଁ ଅସରନ୍ତି ଗନ୍ତାଘର ସମ
ମୁହୂର୍ତ୍ତି ମୁହୂର୍ତ୍ତି ଧରି ଆନନ୍ଦ ପରମ
ଢାଳି ଦିଏ ମୋ ଅନ୍ତର ପ୍ରତି ବେଣୁତଳେ,
ହସି ଖେଳି ନାଚି ମୁହିଁ ଘୁଟଲ ନିରନ୍ତରେ
ଜୀବନ ବୃନ୍ତେ ମୋର ମଧୁ ମନ୍ଦ୍ରେ ବାଇ
ଏ ମହା ସୃଷ୍ଟିରୁ ବଳି, ଆଉ ମୋହ ପାଇଁ
କି ମଧୁ ସଂପଦ ଅଛି ? କିଛି ନାହିଁ ଲୋଡ଼ି
ଚିରଧନ ଚିରକାଳ ସୁଧା-ମୁଗ୍ଧ ତୋଳେ
ଏଇ ମହାଅନନ୍ତରେ ଚାହିଁ ଚାହିଁ ଚାହିଁ
ଏହାରି ଭିତରେ କେବେ ମିଶିଯାଏ କାହିଁ !!!

— ଚଉଷଠି —

ଅଃସ୍ନେକମି

# ପ୍ରିୟ ପଣ୍ଡିତଜୀ !

ନମସ୍କାର କରେ ଅଜ ତୁମ୍ଭ ପାଦତଳେ
ଏ ଦୂର ବିଦେଶେ ଯେବେ ମୋର ମନେପଡ଼େ
କେମନ୍ତେ ସେ' ଦିନ ମତେ ଘୁଞ୍ଚେଦବା ପାଇଁ
ଝଙ୍ଗପଥ ଯାଏଁ ଆସି ରହିଥିଲ ତୁହିଁ,
ସୋଦର ମମତା ବୋଲା ନୈସର୍ବେଳା ଗାଳ !
ଯହୁଁ ଝରି ପଡ଼ୁଥିଲା ତମ୍ଭ ଅଶ୍ରୁ ଧାର !
ରୁଦ୍ଧ କଣ୍ଠୁ ଦେଲବେଳେ ଆଶ୍ୱାସନା ବାଣୀ
ସ୍ଥିର ତ ନଥିଲ ପାରି, ବୁଝୁଥିଲି ଜାଣି
ହୋଇଯାଉଥିଲା କଣ୍ଠ [illegible] ଧାରେ
ଭିଜିଥିଲ ଓମୋହଲଗି ମହାବିସ୍ମୟାରେ
ତୁମ ନୟନେ ରହିଅଛି ଜଣେ ଖାଲି କଣେ,
ଆସୁ ସେତେ ଝରି ସହିଛିବ ପ୍ରତିକ୍ଷଣେ ।
ଭଉଣୀ ଯେବେ ବୁଝିପାରେ ମହାବଣ୍ଟେ ମତେ
କି ଦୁଃଖ ଘଟିଲାଣି ମୋର ଅଛି ସାନାପଥ ।।

— ପଞ୍ଚଷଠି —

## ବାହୁନେବ

ସେ ଭଲ ମମତା ସତେ ରଖିଛ ମୋ ପାଇଁ ।
ମତେ ଦେଖିବାକୁ ଏଥି ଆସିଅଛ ଧାଇଁ;
ପଚାରୁଛ ଗୋଟି ଗୋଟି କୁଶଳ ପ୍ରଶନ
ଭଲ ଲଗୁଛି କି ନାହିଁ ବିଦେଶ ଭୁବନ ।
ଆମେ ସବୁ ମନେ ପଡ଼ୁଁ କେବେ କେବେ ତାହିଁ
ଛ ଭଲରେ ଦିନ ଚହୁଁ ନିଅନ୍ତୁ ପୁହାଇ;
ଏ ସବୁ ଦେଖିଲେ ମୋର ଖାଲି ହୁଏ ମନ
ରହେ ଟୋକି ଧରିଛଣେ ଏ ସାରା ଜୀବନ,
ତୁମ ଟିକି ମନ ତଳେ ଯେବେ ମୋହ ଲାଗି
ଏତେ ଅନୁଭୂତ ଉଠେ ରେଳେ ବେଳେ ଜାଗି,
ମୋ ଅନ୍ତରର ତୃଷେ ଯେବେ ଓଦା ହୋଇପାର,
ମୋ ଦୁଃଖେ ଭର୍ତ୍ସିତ ଯେତେ ତୁମ ସ୍ମୃତିପଥ,
ସେଇଠି ମୋ ଗଉରବ, ତାହାକୁହିଁ ଧରି
ବାହୁନେବ ନାହିଁକି ମୁଁ ମୋ ଦାରିଦ୍ର୍ୟ ଦଶା !

— ଛଣଠି —

## ସାଥିହରା

ସାଥିହରା ହୋଇ ଆଜ ଏ ଦୂର ଭୁବନେ
ବନ୍ଧୁଟିକୁ ହେଲା ମନେ ମନ୍ଦା ନିଭାଇଁନେ !
ସକାଳରୁ ସଞ୍ଜଯାଏ ଖାଲି ହୁଏ ଖାଲି !
ଏ ମୁହୂର୍ତ୍ତେ ତୁମ ପାଖେ ଥାଆନ୍ତି ବାହାର !
ଜୀବନର ଯେତେ ଦୁଃଖ ଗୋଟି ଗୋଟି କରି
ତୁମ ପାଖେ କହନ୍ତି ମୁଁ, ନେତ୍ରୁ ଲୁହ ଝରି—
ଯାଉଥାନ୍ତି, ଦୁଟି ପଦ କହିବାର ବେଳେ
କେତେ ଯେ ଆଶ୍ୱାସ ଆହା ଲଭୁଥାନ୍ତି ମୋତେ
ତୁମେ ମୋରେ ଦେଉଥିଲ ସେନେହ ସମ୍ମାନ
ବୁଝୁଥିଲ ମୋ ଅନ୍ତର ସୁଖ ଦୁଃଖମାନ
ତୁମେ ମୋତେ ଲୋଡ଼ୁଥିଲ ପ୍ରତି ମୁହୂର୍ତ୍ତରେ
ଯେତେଦିନ ଯେତେ ଦିନ ଥିଲି ତୁମର ସଙ୍ଗରେ ।
ଏକାଳ ଡାଆସି, ଏକା ନାହିଁ ବନ୍ଧୁପାରେ !
କହୁଜାଏଁ ଗ୍ରହୁଁ ବନ ବଲି ଗ୍ରହିଅଢ଼େ ।

— ସତପତି —

## ଏକାକୀ ପ୍ରବାସେ

ସୁଦୂର ପ୍ରବାସେ ଏଇ ଗିରିମାଳା ତଳେ,
ନୀରବେ ବସିଣ ଏକା, ମୋର ମନେ ପଡେ
ମୋ ଦରିଦ୍ର ଜୀବନର ଅତୀତ କାହାଣୀ
କେତେ ଦୁଃଖେ ଅସିଛି ମୁଁ ବଢ଼ି ହବା ପାଇଁ;
କାହା ଦ୍ୱାରେ ଗୋଡ଼ ଭାଙ୍ଗି ଠିଆ ହୋଇ ନାହିଁ
ମୋତେ ଟିକେ ସାହାଯ୍ୟ କରୁ ଲକ୍ଷ୍ୟ ନେଲେ ଗୁଣି;
କିଏ କେତେ ମୋ ଦରିଦ୍ର ଜୀବନର ପଥ
କରିଛନ୍ତି କଣ୍ଟକିତ, । ଭଗ୍ନ ମନୋରଥ—
ହୋଇ ମୁଁ ଯାଇନି ଫେରି, ଚାଲିଅଛି ଆଗେ
ନେତ୍ରରୁ ଅଶ୍ରୁ ପୋଛୁ କୋଟି ଅନୁରାଗେ;
କେତେ ଦୁଃଖ ଅଦୃଷ୍ଟର କ୍ରୂର ଆକ୍ରମଣ
ଦେଇନି ପ୍ରହାର ମୋତେ ବିଷମୁ ବିଷମ।
ତଥାପି ଆକୁଳିତ ଲୋଭେ ଚାହେଁ ମୁଁ ଚଞ୍ଚଳ
ଦେଖିବାକୁ ଜୀବନର ସ୍ୱର୍ଣ୍ଣ ଶତଦଳ।

## ତରୁଣ କବି ବିଶ୍ୱମ୍ଭରଙ୍କ ପ୍ରତି !

ହେ କବି ! ଉଦବ୍ର ତବ ଜୀବନର ପଥେ
ଚାଲିଛେ ସାଧନା କରି ପଡ଼ିନାହିଁ ଲହି
ଆଖିକୁ ଲୁହଁ ଛଳ ଛଳ, ଛଳ ଛଳ !
ଦେଖିବ ନିଷ୍ଠୁର ସ୍ୱର୍ଣ୍ଣ ଅଳେଙ୍କର ଛଳ !
ମୃତପଦେ ଜୀବନକୁ ତୁଚ୍ଛ ମନେକରି
ଆପଣାକୁ ଦେଇ ଦେଇ ଶତେକ ଧିକ୍କାର
ରୁଦ୍ଧ ଗୃହ ଅନ୍ଧକାରେ ବିତାଇ ଜୀବନ
କରନା କରନା କବି କେବେ ହାହାକାର !
ଦାରିଦ୍ର୍ୟ ଅଭାବ ଅବା ତୀବ୍ର ଅନଶନ
ହୋଇ ପାରେ ମହାବାଧା ଜୀବନର ପଥେ
ଆତ୍ମାର ନିଜ ମହାଶକ୍ତି ଓତପ୍ରୋତ ହୋଇ
ଜାଗ୍ରତ ତୁମର ଦେହେ ମନେ ଅବିରତେ
ତାହାରେ ପରାସ୍ତ କରି ଉର୍ଦ୍ଧ୍ୱେ ଉଠିବାର
କ୍ଷମତା ସାହସ ଅଛି ଏ ବିଶ୍ୱେ କାହାର ?

— ଅଣସ୍ତ୍ରୋର —

## ସେତେବେଳେ

ଏ ଜୀବନ ଫୁଲଟି ମୋ ତରୁ ବୃନ୍ତଚ୍ୟୁତେ
ଯେମନ୍ତେ ରହୁଚି ଫୁଟି ଏ ଧରଣୀ ପୁରେ
ପ୍ରାଣ ନିତ ଦେଖୁଛି, କି ବିମୁଗ୍ଧ ସପନ !
ଚତୁର୍ଦ୍ଦିଗେ ଭରି ବର୍ଣ୍ଣେ ଗନ୍ଧ ବିକୀରଣ !
ସ୍ୱତବାସୀ ବନ୍ଧୁଗଣେ ଭରି ଅପଣାର
ଭୁଲିଅଛୁ ସୁଖେ ଦୁଃଖେ, ଯାହା ଅସିବାର—
ସେତେବେଳେ ଝଡ଼ଝଞ୍ଜା ଉତ୍ଥାନ ପତନ
ତାହାରେ ଶୋଭାର ନାହିଁ ଭରି କଦାଚନ ।
ସମସ୍ତ ଅସିବ ଦିନେ ବୃନ୍ତ ଛେଡ଼ି ତଳେ
ପଡ଼ିଥିବ ମ୍ଳାନିମାରେ, ପାଖୁଡ଼ା କେଶରେ—
ନାହିଁ ଥିବ ବର୍ଣ୍ଣ ଗନ୍ଧ ଶିଶ୍ରୀ ଜୀବନର,
ନାହିଁ ଥିବ ଏ ଲାବଣ୍ୟ ମନୋମୁଗ୍ଧକର ।
ସେତେବେଳେ ପଥପ୍ରାନ୍ତେ ଠିଆ ହୋଇ କେଉଁ
କିଏ କି ଚାହିଁବ ନାହିଁ କରୁଣ ନୟନେ ?

— ସନ୍ତୋଷ —

## ଆସିଯାଉ ଦିନ କର ଜାତିର ମଙ୍ଗଳ

ହେ ପୁଣ୍ୟ ଦିବସ ମୋର ଜାତିର ଶୃଙ୍ଖଳ
ଛିନ୍ନ ହେଲା ସେଇଁ ଦିନ ମହା ଶୁଭଙ୍କର
ତବ ସୂର୍ଯ୍ୟୋଦୟେ ତବ । ସ୍ମୃତି ସେ ଦିନର
କେମନ୍ତେ ଭୁଲିବି କହ ଜନ୍ମ ଜନ୍ମାନ୍ତର ।
ଶିବାଡ଼ ତମିର ତଳେ ଶିଙ୍ଗା ନାଦ ଟେପନ୍ତେଣି
କେମନ୍ତେ ମୋ ଜାତି ଥିଲା ପଡ଼ି ଗଲେ ମଟେ .
କେତେମାନେ ଶରୀର ସାରି କେବେ ଶୂନ୍ୟ ସ୍ୱପ୍ନ
ଦାସତ୍ୱ ବନ୍ଧନ ଠାରୁ ବଡ଼ ଦୁଃଖ ନାହିଁ —
ମାନବ ଜାତିର ବିଶ୍ୱେ । ଦାପରୁ ହିଁ ତାର
ମାରି ମାରି ଦିଏ ସବୁ ହୃଦୟ ଝଙ୍କାର !
ସ୍ୱାଧୀନ ମାଟିର ମୁହିଁ ସ୍ୱାଧୀନ ଜୀବନ
କେମନ୍ତ ଦେଖଇ ଲକ୍ଷ ସୁନାର ସପନ
ଅଗଷ୍ଟ ପନ୍ଦର । ଦିଅ ବକ୍ଷ ନବ ବଳ
ଆସିଯାଉ ଦିନ କରି ଜାତିର ମଙ୍ଗଳ !

— ଏକସୁର —

ଅନୁଲିପି

## ସେ'ଯେ ଗଲ୍ କାହିଁ ?

ଯେତେ ଯା ସଂପଦ ମୋର ନିଃସ୍ୱ ଭୂକୁତଳେ
ସବୁତକ ଦେବା ପାଇଁ ଅକୁଣ୍ଠିତ କରେ ।
ସୁହିଁ ମୁଁ ବସିଛି ଏଥି ଦିନ ଦିନ ଧରି
କେତେ ଦିନ ମାସ କେତେ ବର୍ଷ ଯାଏ ଚଳି !
କେତେ ସଂଧ୍ୟା ଯାଇ ପୁଣି କେତେ ସଂଧ୍ୟା ଆସେ
କେତେ ସ୍ୱର୍ଣ୍ଣଶିଖା ଜାଗେ ଉଷାର ଆକାଶେ
କେତେ ଲକ୍ଷ ବନ୍ଧୁଯାଏ ନେଇ ସଂସାର,
କେତେ ସ୍ୱପ୍ନ ଦିବାନିଶି ଦେଖେ ଅବିରଳ !
କେତେ ତାରକା ମହାଶୂନ୍ୟ ତଳଦେଶେ ଗୁହିଁ
ସଜାଡ଼ି ରଖିଛି ସବୁ ସେ ଯେ ଗଲା କାହିଁ ?
ଥରେ ସେ ଦେଖିଛି ମୋତେ, ମୁଁ ଦେଖିଛି ଥରେ
ଭଲ କରି ଚାହିଁ ଅଛୁ ଆମେ ପରସ୍ପରେ ।
ବର୍ଷଣ ବାରିଦ ପରି ରହିଛି ଅନାଇଁ
କା' ବକ୍ଷେ ପଡ଼ିବି ଢଳି ସେ ଯେ ଗଲା କାହିଁ ?

— ବାସ୍ତୋଭ —

ଅମୃଲିପି

## ଯାର ଅଛି ତ୍ୟାଗ

ବସିଚି ଆଜ ମୁଁ ଏଇ ଆମ୍ରକୁଞ୍ଜତଳେ
ଶୀତଳ ସମୀର ବହୁଆସେ କୁତୁହଳେ
ପ୍ରତିଆମ୍ରତରୁ ଢ଼ଳି ଆନ ତରୁ ଶିରେ
ମତ୍ତ କି ମାଧୁର୍ଯ୍ୟ ପାନେ ! ଆନନ୍ଦେ ଅଧୀରେ;
ପ୍ରତିତରୁ ପ୍ରତିଶାଖା ଦେଇଚି ବିସ୍ତାର
କି ଶାନ୍ତ ଶୀତଳ ଛାୟା; ପକ୍ୱ ଆମ୍ବ ବାଢି—
ଦିଏ ପୁଣି ବେଳେ ବେଳେ । ଭାବିଲ ମୋ ଅନ୍ତର
ଅନ୍ୟକୁ ବିତରିବାରେ କି ଐଶ୍ୱର୍ଯ୍ୟର
ଦେହେ ମନେ ଫିଟିପଡେ । ଏଇ ଦାନ ଲାଗି
ପ୍ରତିତରୁ ଶାଖେ ଶାଖେ ପର୍ଣ୍ଣେ ଉଠେ ଜାଗି
ଏ ମଧୁ ମୋହନ ମାୟା; ଆମ୍ର କୁଞ୍ଜ ତଳ—
ଲାଗେ ଯେହ୍ନେ ପୃଥିବୀର ଏକମାତ୍ର ଘର—
ଶାନ୍ତ ଆଉ ଐଶ୍ୱର୍ଯ୍ୟର । ଯା'ର ଅଛି ତ୍ୟାଗ
ସେ ଏକା ଧରାରେ ପାଏ ଅମୃତର ଭାଗ !

— ଦେବସ୍ତ୍ରୋତ —

# ଆଶାୟୀ

ଘୃଣ୍ୟ ହେୟ ତୁଚ୍ଛ ମୁହିଁ ପୃଥିବୀ ନୟନେ
ମୋର ହୋଇ ପୃଥିବୀରେ ନାହିଁ କେହି ଜଣେ;
ଚତୁର୍ଦ୍ଦିଗେ ବାତ୍ୟା ବହେ ଭୀମ ଭୟଙ୍କର
କା' ଅଗେ ଫିଟାଇ ମୋର ସମସ୍ତ ଅନ୍ତର
କହିବ ଅନ୍ତର କଥା ? ପାଏ ନାହିଁ କାଚେ,
ବାଢ଼ଯାଏ କେତେକାଳ ଅଶ୍ରୁ ହାହାକାରେ ।
ସବୁ ଦୈନ୍ୟ ସବୁ ବାଧା, ସବୁ ଧକ୍କା ଅସେ,
ଅପଣାର କର ମୁହିଁ ଯାଏ ଯାହା ପାଶେ,
ମୁହଁ ମୋଡ଼ି ଦେଇ ମୋତେ କହନ୍ତି ନା କଥା !
ଗଭୀରୁ ଗଭୀରତର ହୁଏ ମୋର ବ୍ୟଥା !
ଭୀଷଣ ସଙ୍କଟ କୋଳେ ମୁହିଁ ଯାନୀଠିଏ
ପଡ଼ିଅଛି । ମୋର ବକ୍ଷତଳେ ତୁମେ କିଏ ?
ଅନନ୍ତ **ଆଶାର** ଦୀପ ଦେଇଅଛ ଜାଳି !
ତେଣୁ ତ ସେ ଦୀପ ମୋର ସବୁ ଦେଲ ଢାଳି !

— ଭକ୍ତ୍ରୋର —

# ଅମୃତ ରୂପ ।

ସେଦିନ ମୁଁ ସେ' ଗାଡ଼ିରେ ସେ' ଦିନ ସକାଳେ
ଯାଉଥିଲି ବନ୍ଧୁ ମୋର ! ଦରିଦ୍ର କପାଳେ
ଘଟିଲା ପାଇବାକୁ ସାକ୍ଷାତ ତୁମ୍ଭର,
ତୁମେ କାଲୁ ଆସିଥିଲ ପଥ ଶ୍ରମ କରି,
ମତେ ଠିକେ ଦେଖିଥାନ୍ତ ବୁଝିଥାନ୍ତ ମମ—
ପ୍ରାଣର ଅତଳ ତଳେ ଅଘାତ ବିଷମ
କେମନ୍ତେ ରହିଛି ଲାଗି, ତୁମ୍ଭମାନଙ୍କର
ସ୍ନେହ ଶ୍ରଦ୍ଧା ସମ୍ମାନର ପାଇଁ ନିରନ୍ତର
ମୁଁ ଯେତେ ପାରିଛି ହୋଇ ନିଃସ୍ୱ କବିଜନ ,
କି ଦେବି ତା ପ୍ରତିଦାନ ? ଏଇ ଅଶ୍ରୁ କଣ—
ଛଡ଼ା ମୋର କିବା ଅଛି ? ତୁମେ ମୁଁ କେ' ଜାଣି ?
ଅନ୍ତର ଅନ୍ତରେ ଖୋଜେ ଶରଧନ ପାଇଁ
ସ୍ରଷ୍ଟା ଯେ ଗଢ଼ିଛି ଏଇ ଜୀବନ ଅମ୍ବର
ବାସ୍ତବିକ କି ସୁନ୍ଦର ରୂପ ଅମୃତର !!

— ପଞ୍ଚସ୍ତୋତ୍ର —

# ହେ ମୋର ଅଲମ !

ହେ ମୋର ଅଲମ ! ମୋର ନେତ୍ର ଜଷ୍ପ ବାର
ତାହିଁକି ଦେଉଛ ପୋଛି ? ସ୍ୱର୍ଣ୍ଣ ଭର ଗ୍ଲଳ !
ଯେତେ ଯା ବେଦନା ଦୁଃଖ ଦରିଦ୍ର କପାଳେ
ଭୋଗିବାକୁ ହେବ ମତେ । ନିଖିଳ ସଂସାରେ—
ତାହାକୁ କଜ୍ଜଳ ରୂପେ ଝୁଲିବାକୁ ହେବ-
କେତେବେଳେ, ଜାଣିବାର ନୁହଇ ସମ୍ଭବ !
ବୋହିଯାଉ ଯେତେ ଅଶ୍ରୁ ଅଛୁ ବହିବାର
ଆସୁ ସେତେ ଯେତେ ଦୁଃଖ ଅଛୁ ଆସିବାର
ପୃଥିବୀର ପୁଞ୍ଜୀଭୂତ ଦୁର୍ଦ୍ଦଶା ସକଳ
ଲୀଳାବରୁ ଆସି ମୋର ଏଇ ବୁକୁତଳ ।
ତାନ୍ଦ ତାନ୍ଦ ଗଢ଼ିଯାଏ, ମୁଁ ପାଗଳ ପରି,
ମତେ କାପଁ। ହେ ଅଲମ ରଖିଅଛ ଧରି ?
ଦେଉଛ ସାନ୍ତ୍ୱନା ମଧୁ ! ମୋହର ଜୀବନ,
ଶତବାଧା ଶତଦୁଃଖ ଲୀଳା ନିକେତନ !

— ଛନ୍ତ୍ରୋର —

## କିପାଁ ଚାହେଁ ପ୍ରତିକ୍ଷଣେ !

ମୋର ଏଇ ଅପୁତ୍ରକ ଦରିଦ୍ର ଜୀବନେ
ତୁମକୁ ଅଲସ କିପାଁ ଚାହେଁ ପ୍ରତିକ୍ଷଣେ ।
ପଚ୍ଚରେ କିପାଇଁ ତୁମେ ଖାଇଛ କି ନାଇଁ ?
ନାଇଁ ଖାଇଥିଲେ କିପାଁ ପାଖରେ ବସାଇ
ଖୋଇବାକୁ ତୁମରେ ମୁଁ, ମନେ ଇଚ୍ଛା ଜାଗେ
ଖାଉଥିଲେ ଜଳଖିଆ, ଚହୁଁ ଅନ ସ୍ରେତେ
କିପାଇଁ ତୁମରେ ଦିଏ, ସବୁର ଅଲକ୍ଷେ,
କି ମଧୁ ମୋହନ ଡୋର ବାନ୍ଧେ ତୁମ ସାଥେ !
ପାଇଲେ ବିରାମ ଲଟେବ, ବସି ତୁମ ସହ
ଶୁଣିବାକୁ ତୁମ ତୁଣ୍ଡ କଥା କି ଆଗ୍ରହ—
ଜାଗେ ଏ ଅନ୍ତରେ, ତୁମ ଗଜରବଟିକ,
ଲାଗେ କିପାଁ ମୋରେ ଏତେ ଅଧିକରୁ ଅଧିକ,
ସୁଖେ ବଞ୍ଚିଥାଅ ବାବୁ ! ନିଖିଳ ଭୁବନେ
ତୁମକୁ ଅଲସ କିପାଁ ଚାହେଁ ପ୍ରତିକ୍ଷଣେ !

— ସତସ୍ତ୍ରୋର —

ଅନୁଲିପି

# ମୁଁ ଗୋଟିଏ ଲୋକ

ମୁଁ ଗୋଟିଏ ଲୋକ ଏଇ ମହା ପୃଥିବୀର
ଦିନେ ଲିଭିଯିବ ଏଥି, ସୂର୍ଯ୍ୟସମ ଥିର—
ରହିବ ପାରିବି ନାହିଁ । ସୃଷ୍ଟି ଆଦିକାଳୁ
ମୋହି ଭଳି ଲକ୍ଷ ଜନ ଏ ମହାସଂସାରୁ
ବିଦାୟ ନେଲେଣି, ପୁଣି ମୋହିଭଳି ଲୋକ
ଆସିବେ ଅଗଣ୍ୟ ଲଭି ସୁଖ ଦୁଃଖ ଶୋକ—
ଧରାରେ କାଟିବେ କାଳ ପୁଣି ଯିବେ ଚାଲି,
ସତ୍ତା କାର ମିଳିବନି ସ୍ୱପ୍ନେ ହେଲେ ଖାଲି
ନିମିଷକେ ଦେଖିବାକୁ । ମୋର ଅବସ୍ଥିତି
ମୋତେ ଏତେ ଦିଏ କପାଁ ସୁମଧୁର ପ୍ରୀତି !
ଦୁଃଖ ନାହିଁ କ୍ଷଣେ ଦଣ୍ଡେ ରହେ ଧରାପରେ
ଅସୀମ ପ୍ରାଣର ମାୟା ମୋହର ଭିତରେ
ବିତେ ଯେଉଁ ମଧୁ ଦିନ ସେତିକି ଧରି
ମୁଁ ଗୋଟିଏ ଲୋକ ବୋଲି ଯାଏ ଗର୍ବ କରି !

— ଅଠସ୍ତୋର —

ଅମ୍ବଲ୍ଲି

## କବି ଓ କବିତା

କରମେ ଶରମେ ଯେବେ ଲେଖଣୀଟି ଧରି
ଲେଖଇ କବିତା ବସି ତାନମାନ ଭରି;
କହନ୍ତି କୁଟୀର ରାଣୀ "ଗୃହଧନ୍ଦା ଛାଡ଼ି
ଏ କବିତା ଲେଖିବାରେ କି ସମ୍ପଦ ବାଢ଼ି
ମିଳଇ ତୁମରେ କହ ? ଅଜାଯାଏଁ ଲେଖି
କେତେ ଖଣ୍ଡ ବହି ଭଲ ଛାପିଅଛ ଦେଖି
କବି ବୋଲି କେବେ ଅବା ପାଇଛ ସମ୍ମାନ
ବିପୁଳ ଜନତା ମେଳେ, ବରଂ ହଇରାଣ—
ହୁଅ ତୁମ୍ଭେ ପ୍ରତି ପଦେ, ଦୁଃଖ ଅଭାବର—
କଷାଘାତେ ବେଳେ ବେଳେ ତୁମେ ଥକାପଡ଼ !
ପ୍ରଭୁତ୍ୱ କ୍ଷମତା ନାହିଁ, କେହି ତୁମ୍ଭ ବାଣୀ
ମାନନ୍ତି ନ, ସମାଜର ଅପଦାର୍ଥ ପ୍ରାଣୀ ।"
"ହୁଏ ମାନହାନି କେହୁ ନ ଲୋଡନ୍ତୁ ଲବେ
କବିତାରେ ବିଶ୍ୱପ୍ରାଣ ନିତ ଅନୁଭବେ !"

— ଅଣାଅଣି —

ପତ୍ରଲିପି

## ଦୁଇଟି ପ୍ରାଣର.........

ଦୁଇଟି ପ୍ରାଣର ଯେଉଁ ନିବିଡ଼ ବନ୍ଧନ
ଦୁଇଟି ପ୍ରାଣର ଯେଉଁ ମଧୁ ଆଳାପନ
ଦୁଇଟି ପ୍ରାଣର ଯେଉଁ ବେଦନା ଦୁର୍ବହ
ଦୁଇଟି ପ୍ରାଣର ଯେଉଁ ଅଶ୍ରୁ ପ୍ରାଣମୟ !
ଦୁଇଟି ପ୍ରାଣର ଯେଉଁ ଚୁପି ଚୁପି ଭାଷା
ଦୁଇଟି ପ୍ରାଣର ଯେଉଁ ବୁଲୁଡଳ ଆଶା
ଦୁଇଟି ପ୍ରାଣର ଯେଉଁ ପ୍ରାଣ ଦୋଳା ଦ୍ୱୀପ
ଦୁଇଟି ପ୍ରାଣର ଯେଉଁ ଶତ ଦୀର୍ଘ ଶ୍ୱାସ
ଦୁଇଟି ପ୍ରାଣର ଯେଉଁ ଦାରୁଣ ବିରହ
ଦୁଇଟି ପ୍ରାଣର ଯେଉଁ ମିଳନ ଆଗ୍ରହ
ଦୁଇଟି ପ୍ରାଣର ଯେଉଁ ଦେଖିପାରିବାର
ଦୁଇଟି ପ୍ରାଣର ଯେଉଁ ପୁଣ୍ୟ ବ୍ୟବହାର
କି ଅନନ୍ତ ଐଶ୍ୱର୍ଯ୍ୟ ନାହିଁ ତହିଁ ଭବ ?
ଏ ମାଟିର କେଉଁଠାରେ ଅଛି ଏଇକ[illegible] ?

— ଅଣିଏ —

## ଲଡ଼କା !

ଲଡ଼କା ଗୋ ! ତତେ ମୁହଁ ଖାଲି ଭଲପାଏ !
ଲଡ଼କା ଗୋ ! ତତେ ମୁହଁ ଚିରଦିନ ଚାହେଁ !
ଲଡ଼କା ଗୋ ! ତତେ ମୁହଁ ଖାଲି କଥା କହେ !
ତୋ ପାଇଁ ମୁଁ ପଥପ୍ରାନ୍ତେ ଅପେକ୍ଷା ଯେ ରହେ !
ଲଡ଼କା ଗୋ ! ତତେ ଖାଲି ଦେଖିବାକୁ ଡ଼ୋଳେ
ଚାଲିଆସେ ତୋର ଗାଆଁ ବିଲ ବନ ଖୋଳେ !
ଲଡ଼କା ଗୋ ! ତୋ ଓଠର ମୃଦୁ ମୃଦୁ ହାସ
ଦେଖିବାକୁ କେତେ ନାଇଁ କରଇ ପ୍ରୟାସ !
ଲଡ଼କା ଗୋ ! ତୋ ଅନ୍ତର ସେଇ ମଧୁ ଠିକ
ମତେ ଲାଗେ ଚିରଦିନ ଅଧିକୁ ଅଧିକ !
ଲଡ଼କା ଗୋ ! ତୋହ୍ନ ପାଖେ ନେଇ ଲୁହ ଢ଼ାଳି
କହିବାକୁ ମୋ ବେଦନା ଇଚ୍ଛା ହୁଏ ଭାରି !
ଲଡ଼କା ଗୋ ! ଲଡ଼କା ଗୋ ! ଚାହିଁ ମତେ ଚାହିଁ !!
ମୋ ପାଇଁ ରଖିଚ କିଏ ସୀମାହୀନ ମାୟା ??

— ଏକାଅଣି —

ଅନୁଲିପି

## କେଡ଼େ ଭଲ ତମେ !

ଏ ଧରଣୀ କେଡ଼େ ଭଲ ! କେଡ଼େ ଭଲ ତମେ !
ମୁଁ ତୁମକୁ ଅପଣାଉ କରେ ମନେ ମନେ !
ପ୍ରଜାପତି ଉଡ଼ିବୁଲେ ଉଡ଼ିବୁଲେ ମୁହିଁ
ତୁମକୁ ସେତେନେହେ ଟିକେ ଦେବାଲାଗି ଛୁଇଁ !
କଥା ପଦେ କହିବାକୁ କେତେ ଲେଉଡ଼ିହୁଏ
ତୁମେ ଦୂରେ ମୁହିଁ ଦୂରେ ଅଲଗା ସେ ଦୁହେଁ !
ତୁମେ ଜାଣ ମତେ ମୁହିଁ ତୁମକୁ ଗୋ ଜାଣେ !
ଟିକିଏ ତ ମିଶିଗଲେ ନାହିଁ ପ୍ରାଣେ ପ୍ରାଣେ ?
ଫୁଲ ହସେ ତାରା ହସେ ଚନ୍ଦ୍ର, ହସେ ନଭେ
ତୁମେ ଥିରେ ହସିଲନି ମୋ ପାଖେ ନୀରବେ ?
ତୁମେ ଯିବ ମୁହିଁ ଯିବି ମିଶି କେଉଁ ପାରେ
ଅବୁଝା ରହିବା ଆମେ ବେନିଏ ସଂସାରେ
ପ୍ରାଣ ପାଖେ ପ୍ରାଣର ଯେ ମଧୁ ନିବେଦନ
ତାର କଣ ଶେଷ ସନ୍ଧି ! ହେବ କଦାଚନ !

— ବଯ୍ଣାଅଗ୍ନି —

# ଦିନକର ପ୍ରଶ୍ନ

ସେ ଦିନ ଶାରଦ ସନ୍ଧ୍ୟା, ଦିନାନ୍ତ ତପନ—
କନକ ଅଭ୍ରରେ କରି ସିକ୍ତ ଏ ଭୁବନ,
ଶାନ୍ତ ଗିରିଚୂଳେ ବୁଡ଼ି, ବୁଡ଼ି ଯାଇନାହିଁ,
ଅସ୍ଫୁଟ ଶସ୍ୟର ଗନ୍ଧ ଦିଗ ମହକାଇ ।
ଅଗଣିତ କହ୍ଲାରଫୁଲ୍ ପ୍ରକୃତି ବଧୂର
ସ୍ଫୁର୍ତ୍ତ ହାସ ସମ ଫୁଟି ଦିଶଇ ରୁଚିର
କୋଳେ ମୋର ମଥା ଥାପି ଜୀବନର ରାଣୀ
କହିଲା ଖେଳାଇ ସ୍ମିତ ଓଠେ ମଧୁବାଣୀ ।
"ମୁଁ ଯେବେ ତୁମରେ ପ୍ରିୟ ଏଇପରି ରହୁଁ
ବୁଝନ୍ତି ନୟନ ଡୋଳା ଶରଦିନ ପାଇଁ
କେମନ୍ତେ ଲଗନ୍ତା ଭଲ ! କି କରନ୍ତ ତମେ ?"
ନିବିଡ଼ ଅଶ୍ଳେଷ ଦେଇ ଅଶ୍ରୁଳ ନୟନେ,
କହିଲି," ମୁଁ ଶରଦିନ ତୁମ ସ୍ୱପ୍ନ ଦେଖି
ଅଶ୍ରୁରେ ଗୋ ଯାଉଥାନ୍ତି କୋଟିକାବ୍ୟ ଲେଖି ।"

— ତେଯ୍ୟାଅଣି —

ଅମୃଲିପି

## କାହିଁକି ?

ସ୍ମୃତିପଥେ ସେଇକଥା ଘୁଣି ଆସେ ଭଇଁ
ଥିର ହୋଇ ମୁହୂର୍ତ୍ତେ ମୁଁ ନାହିଁ ରହିପାରେ
କେତେ ଦୁଃଖ ଦୁର୍ଦ୍ଦଶା ଯାଇନାହିଁ ଭୁଲି !
ଆଜ କି ଆସିବ ବୋଲି ସବୁବେଳେ ଭାଳେ ।
ଆସିଲେ ଆସିବ ମୋର କବା ଅଛି ହାତ
କିନ୍ତୁ ମୁଁ ଚାଲିଚି ସଖି । ମଧୁ ଆଶା ଧରି
ଯେତେ ହେଉ ଦନ୍ତୁଦନ ପିଚ୍ଛିଲ ମୋ ବାଟ
ଚାଲିଥିବା ପାଦ ଶିଖି ନିମିଷେ ନ ଡ଼ରି ।
ଦର୍ବଳସୁ ଫୋଟେଲ ଉଇଁ ପାଠେଲ ତପନ
ନିଭସାଜ ସେତେବାର ଅଛି ନିଭିବାର
ଝରପଡ଼ି ଲକ୍ଷ କଳି ନ ହୋଇ ସୁମନ
କିପାଇଁ ଟାଳିବା ବସି ତନ୍ତ୍ର ଲକ୍ଷ୍ୟଧାର ?
ଚାଲିବାର ପଥେ ସଖି ! ଚାଲିଥିବା ଆମେ
କାହିଁକି ସେ କଥା ଆଜ ଭାଳିହେବା ପ୍ରାଣେ !

— ଚଉରାଅଣି —

# ତୁମଠି ମୁଁ ହଜିଯାଏ !

କୁସୁମର ଗନ୍ଧପରି ତୁମେ ସଖି ! ମତେ
ମୁଗ୍‌ଧ କରି ରଖିଅଛ ଧରାରେ ସନ୍ତତେ;
ଅନ୍ତରର ଯେତେ ଯାହା ସମ୍ପଦ ବିପୁଳ
ନ ହୁଏ କୁଣ୍ଠିତ ମୁହିଁ କରିବାକୁ ଠୁଳ—
ତୁମରି ଚରଣ ପ୍ରାନ୍ତେ; ମହାସୃଷ୍ଟି ମମ
ତୁମ ଲାଗି ଲାଗେ ମୋରେ କାନ୍ତ ମନୋରମ,
ତୁମରି ଭିତରେ କିବା ଅନନ୍ଦର ମାୟା
ସତତ ଆକର୍ଷେ ମୋରେ, ସବୁ ଦୁଃଖ ଛାୟା
ଅପସରି ଯାଏ କାହିଁ; ମନେହୁଏ ମମ
ବସନ୍ତ ତୁମଠୁ ଯେତେକ ପାଇଛି ଜନମ,
ଓଠରୁ ପଦ୍ମର ସୃଷ୍ଟି, ନାଶାରୁ ମଳୟ;
ରସନାରୁ ପଞ୍ଚମର ବାଣୀ ମଧୁମୟ
ଦେଇଛ ଧରାରେ ଢାଳି, ହେ ମୋର ସୁନ୍ଦର !
ତୁମଠି ମୁଁ ହଜିଯାଏ ନିଜରେ ବିସ୍ମରି !

## ସେ

ଫିଙ୍ଗିଦେବି ସମ୍ରାଟର ମଣି ସିଂହାସନ
ଫିଙ୍ଗିଦେବି ଧନରତ୍ନ ସ୍ୱର୍ଣ୍ଣ ଆଭରଣ
ଫିଙ୍ଗିଦେବି ରାଜଦଣ୍ଡ ଥିଲେ ମୋର କରେ
ମୋ ଆନନ୍ଦ ନାହିଁ ସେଇ ଭୋଗ ଆଡ଼ମ୍ବରେ ।
ପୃଥିବୀରେ ହୁଏ ମୁହିଁ ଦରିଦ୍ର ଭିକାରି
ଅନ୍ନ ଲାଗି ବୁଲେ ନିତ କରପୁଟ ପାରି
ତହିଁରେ ମୋ ସମ୍ମାନର ହେବନାହିଁ ହାନି
ଥିବ ଯେବେ ପାଶେ ମୋର ହୃଦ କୁଞ୍ଜରାଣୀ—
ଷୋଡଶୀ ତରୁଣୀ ସେହି ପଲ୍ଲୀବଧୂ ମମ
ବାଜ ଯା ନିଶ୍ୱାସ ବଂଶୀ ଧ୍ୱନେ ମନୋରମ;
ତାହାରି ସାନ୍ନିଧ୍ୟ ଲଭି ଦିଶିବ ସୁନ୍ଦର
ତା' ପରଶେ କଷ୍ଟ ବାଧା ହୋଇବ ଶୀତଳ
ସବୁ ସୁଖ ସମ୍ପଦର ସ୍ୱର୍ଣ୍ଣ ନିକେତନ
ତାହାରି ଗୋଟିକ କଷ୍ଟ ଲାଗେ ପ୍ରିୟତମ !

— ଛାୟାଶ୍ରୀ —

## ତୁମେ ଗୋ ରହିବ !

ଆଖି ଆଗେ କିଏ କାହିଁ ଚାଲିଗଲେ ମମ
ପାଇଲି ନାହିଁ ତ କା'ର ଦେଖା ଦରଶନ ।
ତୁମେ ତ ରହିଲ ହୋଇ ଏକାନ୍ତ ନିଜର,
ତୁମେ ତ ରହିଲ ହୋଇ ଆଶାର ନିର୍ଝର,
ତୁମେ ତ ରହିଲ ହୋଇ ସ୍ୱପ୍ନ ଜୀବନର,
ତୁମେ ତ ରହିଲ ହୋଇ ପ୍ରାଣର ଦୋସର ।
ତୁମରେ ଚାହିଁଲେ ସବୁ ଭୁଲିଯିବ ବ୍ୟଥା ।
ତୁମଠୁ ଶୁଣିଲେ ପଦେ ଅମୃତ ବାରତା
ମଣିବ ଜୀବନ ମୋର ଆନନ୍ଦର ଘର,
ସବୁ ତ ଯାଇଛ ତୁମେ ରହିଛ ନିଜର ।
ଯେତେ ଦୂର ଯାଏ ମୁହିଁ, ଯାଏ ତୁମ ଲାଗି,
ତୁମଲାଗି ଶ୍ୟାମ ଦୁବା ଉଠେ ସିନା ଜାଗି ।
ଏ ମରୁ ଅନ୍ତର ତଳେ ସବୁଜ ସମ୍ଭାରେ ।
ତୁମେ ଗୋ ରହିବ ସବୁ ସମ୍ପଦ ଦେବାରେ ।

— ସଢାଅଶ୍ରୀ —

ଅଞ୍ଜଳି

# କି ମଧୁ ସ୍ପର୍ଶରେ ଭରିଉଠେ ମୋ ଅନ୍ତର

ନଈ ଯେବେ ବହିଯାଏ କଳତାନ କରି,
ଫୁଲ ଯେବେ ମହକାଏ ଖିଳି ବସୁନ୍ଧରା
ସ୍ୱର୍ଣ୍ଣ ଯେବେ ବୁଡ଼ିଯାଏ ଦିଗନ୍ତ ସେ ପାରେ
ପୃଥିବୀ ସନ୍ଧରେ ଯେବେ ଜ୍ୟୋତ୍ସ୍ନା ପାରିବାରେ
ଧୂସର ଶଇଳଚୂଳେ ସନ୍ଧ୍ୟାତାରା ଉଇଁ
ଥିରି ଥିରି ଯାଏ ଯେବେ ଦିଗ୍‌ବଳୟ ଛୁଇଁ,
ନିଶୀଥ ନୀରବ ନଭେ ମହାନିସ୍ତବ୍ଧତା
କାନେ କାନେ କହେ ଯେବେ ଅନନ୍ତ ବାରତା
ପ୍ରାଚୀଚକ୍ରବାଳ ତୀରେ ସିନ୍ଦୂର ଲହରୀ
ଖେଳି ଖେଳି ଯାଏ ଯେବେ, ମଧୁର କାକଳି—
ସୋହାଗେ ନଚ୍ଚଇ ଯେବେ ବିଲ ପଦା ବନ
ରଚଇ ବିମୁଗ୍ଧ ପୁରୀ ସ୍ୱପ୍ନ-ନିକେତନ,
ଏ ସବୁ ଭିତରେ ତୁମେ ନିତ୍ୟ ମନେପଡ଼
କି ମଧୁ ସ୍ପର୍ଶରେ ଭରିଉଠେ ମୋ ଅନ୍ତର ।

— ଅଠାଅଣି —

## ଲଜ୍ଜାବତୀ

ଏତେ ଲଜ୍ଜା କାହିଁପାଇଁ ମୋ ପାଖେ ଛଇଳା
ତୁମ୍ଭେ ମୋତେ ଭଲ କର, ହେ ମୋର ମହିଳା !
ମଧୁକଣ୍ଠୁ ଫେଇ କହ ପଦେ ମଧୁବାଣୀ
ଶାନ୍ତ ହେଉ ତପ୍ତ ଏଇ ବକ୍ଷ, ଦର୍ଶାକାମୀ
ତୁମ୍ଭେ ରହ, ସୂର୍ଯ୍ୟମୁଖୀ ଯଥା ସୂର୍ଯ୍ୟେ ଚାହିଁ
ଲଜ ଲଜ କରି ରହ କିବା ଅଭିପ୍ରାୟେ ?
ଯୁକ୍ତ ହେବ ତୁମ୍ଭେ ସଖି ! ନିତ୍ୟ ମୋର ଦେହ
ଅନ୍ତରେ ଅନ୍ତରେ ହେବ ମୂର୍ତ୍ତି ପରିଚୟେ
ଏତେ କିମ୍ବା ଲଜ୍ଜକୁଳୀ ଲତା ପରି ତମେ
ମୋତେରିକ ଚାହିଁଲେ ଲଟେ ତଳମୁଣ୍ଡ କ୍ଷଣେ
ଅସ ଆସ ଚାଲି ତବ ସର୍ବାଙ୍ଗେ ଅଙ୍ଗୁଳି
ସେନେହ ପରଶ ଦିଏ, ବକ୍ଷ ଭରୁ ପୂରି
ଅମୃତର ଉପାସ୍ୟନେ, ମନ ତୃପ୍ତ କରି
ବିଳସେ ଭ୍ରମର ବକ୍ଷେ ରୂପସି ସୁନ୍ଦରି !

ଅଞ୍ଜଳି

## ଭୁଲବନି ଏ ମଧୁ ବନ୍ଧନ

ସେ ସୌମ୍ୟ ସୁହାଣୀ ସେଇ ନୀଳ ନୟନର
ମନେ ମୋ ପଡ଼ଇ ଯେବେ ନିଖିଳ ଅନ୍ତର
ଉଠଇ ଉଲ୍ଲସି ଯେହ୍ନେ ଶ୍ୟାମ ଦୂର୍ବାପତ୍ର !
ଶାରଦ ପ୍ରଭାତ କୋଳେ ! ସୁନ୍ଦରୀ ସୁନେତ୍ର
ରଚନ୍ତି ସେ ମଧୁ ତାନ, ନୂଚନ୍ତି ଶୁଖିବାର ।
'କେମନ୍ତେ ସେ ଭଲପାଏ ମୋତେ ଅନିବାର,
ଅରପି ସମସ୍ତ ତା'ର; ନାହିଁ ରଖି ବାକୀ—
ଇଚ୍ଛାହୁଏ ବେଳେ ବେଳେ ନିଭୃତେ ମୁଁ ଡାକି,
ସେ ବରବାଳାରେ ମୋର ପଚ୍ଚରନ୍ତ ମୁହିଁ ।
କହନ୍ତେ କ୍ଷଣୋଚ୍ଚ ପ୍ରିୟା ଦେହ ମୋର ଛୁଇଁ,
ଏ ସେନେହ ଏଇ ସ୍ନିଗ୍ଧ ଶୁଭଦୃଷ୍ଟି ଢାଳି
ମୋତେ ନିତ କରୁଥିବ ପ୍ରାଣର ସଙ୍ଗୀଳ ?
ଅସୁ ଶତବାନ୍ଧା ବନ୍ଧ ପୂର୍ଣ୍ଣବାସୁ ସମ
ତା' ଭିତରେ ଭୁଲିବନି ଏ ମଧୁବନ୍ଧନ !

— ନବେ —

## ସରସୀଘାଟେ

ସେଦିନ ସରସୀ ଘାଟେ ପ୍ରଥମ ଯୌବନେ,
କହିଥିଲ ଯେଉଁ ବାଣୀ ଅଗୋ ବରାନନେ ।
ଅଧରର ସ୍ୱର୍ଣ୍ଣହାସେ ନୟନ କଟାକ୍ଷେ—
ଏ ବକ୍ଷେ ରହିଛି ଲେଖା ସତ୍ୟ ! ଅକ୍ଷରାଙ୍କେ;
ସେ ଯେ ବାଣୀ ସେ କାହାଣୀ ସେଇ ସ୍ୱର୍ଣ୍ଣହାସ
ନିଭୃତନେ କାହିଁ ତା'ର ମୋହନ ଉଚ୍ଛ୍ୱାସ ?
ଅନନ୍ତ ଘଟଣା ସ୍ରୋତ ଭିତରେ ସୁନ୍ଦର !
ଭୁଲିଅଛି ମୋ ଦରିଦ୍ର ଜୀବନର ତର୍ଷ ।
ସକଳ ଭିତରେ କିନ୍ତୁ ମନେପଡେ ମମ
ସେଦିନର ସେଇ କ୍ଷୁଦ୍ର ମୁହୂର୍ତ୍ତ ପରମ !
'ତୁମେ କି ମୋହର ହୁଅ' ? ସେ ବାଣୀ ତୁମର
ପିନ୍ଧାଇଛି ଶିରେ ସ୍ୱର୍ଣ୍ଣ ମୁକୁଟ ମୋହର ।
ଦେଇଛି ଦେବାର ଯାହା ଅନ୍ତରେ ଅନ୍ତର
ତାହା ବଳେ ବିଶ୍ୱ ମୁହିଁ ଯୁଗେ ଯୁଗେ ବଡ଼ !

— ଏକାନରେ —

ଯତ୍ନଲିପି

# ଅନୁଭବ

କାହିଁକି ମୁଁ ତାରେ ଏଥି ଏତେ ଏତେ ସ୍ବରେ
କାହିଁକି ମୁଁ ତାହା ସ୍ୱପ୍ନ ଦିନରାତ କରେ ?
ସମସ୍ତ ସମୟ ମୋର ଦେଇ ତାହା ପାଇଁ
କି ମଧୁ ସଂପଦ ପାଏ ଜାଣିପାରେ ନାହିଁ !
ମୋ ଦେହ ମନର ପ୍ରତି ସୂକ୍ଷ୍ମ ତନ୍ତୁ ତଳେ
ସେ କିମ୍ବା ନିଭୃତ ଏତେ ବିଚରଣ କରେ ?
ମୁଁ ତା'ରେ କଅଣ କହେ କି ସମ୍ପଦ ମାଗେ ?
ସେ ମୋରେ କେମନ୍ତେ ଗୁହେଁ ମୁଗ୍ଧ ଅନୁରାଗେ !
ସେ ମୋରେ ଛାଡେନା କେବେ ଛାଡ଼ିନାହିଁ ପାରେ,
ମୁଁ ମୋର ପ୍ରାଣର ମାୟା ଅବିରନ୍ତ ଢାଳେ !
ମୁଁ ତାରେ ଯେତିକି ଖୋଜେ ତା' ଠାରୁଁ ସେ ବଳି
ଖୋଜି ଖୋଜି ମୋରେ, ପଡ଼େ ମୋ ଅନ୍ତରେ ଢଳି !
ସୂକ୍ଷ୍ମ ଅନୁଭୂତିବୋଳା ପ୍ରାଣର ରକତେ
କି ଅମୃତ ପିଇ ମୁହିଁ ଭୁଲିଛି କାହିଁ ସେ ॥

— ବସ୍ମାନନ୍ଦ —

# ଏଇ ଯେ ଟିକିଏ ହସ !

ଏଇ ଯେ ଟିକିଏ ହସ ତୁମ ଓଠ ତଳେ
କି ବିଦ୍ୟୁତ ଦେହ ମନେ ମୋର ସୃଷ୍ଟି କରେ !
କି ମଧୁ ସମ୍ପଦ ଏଥି ରହିଅଛି ଭରି
ମୋତେ ନିଏ ନିମିଷକେ ଅପହାର କରି !
କେଉଁ ମନ୍ତ୍ର ସେ ଲୁଚିଛି ସେ ସ୍ୱର୍ଣ୍ଣ ଓଠ ତଳେ
କେଉଁ କି ଅମୃତ ଶିଖା ନିତ୍ୟ ଅଭିନବ !
ଦୁଃଖରେ ଜୀବନେ ମୋର କେତେ କେତେ ଥର
ଝାଙ୍କି ଚକ୍ଷୁ ନାହିଁ ମୁହିଁ ବ୍ୟଥିତ କାତର
ଚିରଅବସାଦ ଛାୟା ଦେହେମନେ ଭରି;
ମୋତେ ରଖିଅଛି ଯେବେ ଶରମୁଣ୍ଡ କରି ।
ମୃତ ଓ ମୁମୂର୍ଷୁ ମୋର ଏଇ ଦେହମନେ
ଦେଇଦିଏ ସଞ୍ଜୀବନୀ, ଅମୃତ ଦୀପନେ
ଜିଅଇଏ ପୃଥିବୀରେ, ସିଂହ ଶିଶୁ ପରି;
ନିକଟେ ଆଶା ଅଭିଳାଷ ଗୋଟି ଗୋଟି ଧରି !!

— ଭେମ୍ବାନବେ —

ଅନୁଲିପି

# ଯିବ କେଉଁ ଆଡ଼େ ?

କେତେ ପରିଚୟ କେତେ ମଧୁ ଆଳାପନ,
ଆପଣାର କରି କେତେ ଲୋଡ଼ିବାରଷଣ,
ସ୍ନେହଁ ବସିବାର କେତେ ଉଷ୍ଣ ଅଶ୍ରୁ ଢାଳି,
ଡାକିବାର ପ୍ରିୟ ବୋଲି ବୁକୁତଳ ବାନ୍ଧି—
ସୀମାହୀନ ମମତାର ପ୍ରାଣବୋଳା ମାୟା
ମନେ ମୋର ପଡ଼ିଗଲେ ଏ ସକଳ ଯାହା—
ବିସ୍ମରେ ଏ ପୃଥିବୀରୁ ଯିବ କେଉଁ ଆଡ଼େ ?
କାହିଁକି ବା ଯିବ ? କେଉଁ ସମ୍ପଦ ଅଶାରେ,
କା' ଓଠ ବଚନ ଏତେ ଲାଗିବ କେ ମିଠା ?
କା' ସ୍ନେହାଣୀ ପିଠାଇବ ଅମୃତ କବିତା
ଏ ମୋର ମରମ ତଳେ ? କାହା ସ୍ପର୍ଶ ଟିକେ
ଲାଗିବକେ ପ୍ରାଣୁବଳି ଅଧିକୁ ଅଧିକ ?
ବୁକୁକାଟି ରକ୍ତ କାଏ ଟୋପା ଟୋପା କରି
ଦେବ କେ ମୁଁ ପଡ଼ିଥିଲେ ଜୀବନ୍ମୃତ ପରି ?

— ଚଉରାନବେ —

## ସେ' ଦିନ ଆସିଲି ଫେରି !

ସେ'ଦିନ ଆସିଲି ଫେରି ପ୍ରବାସ ଭୁବନେ
ଏଇ ହତଭାଗିନୀଟିର ରହିଥିବ ମନେ
କହିଥିଲ ତୁମେ ସଖି ! ବାରବାର କରି
ନେତ୍ରପ୍ରାନ୍ତୁ ଅଶ୍ରୁ ପୋଛି । ମୁଁ ଆଜି ତୁମରି
ସେ' ପଦକ ବାଣୀ ଖାଲି ଯାଉଅଛି ଭୁଲି
ପାରୁନି ପାରୁନି ସଖି ! ପାରୁନି ସମ୍ଭାଳି
ଅନନ୍ତ ସମୁଦ୍ର ପରି ତୁମରି ଅନ୍ତର
ସ୍ନେହ ମାୟା ମମତାରେ ଭରିଲା ଚଞ୍ଚଳ ।
ରଖିତ ମୋ ପାଇଁ ତମେ । ନାହିଁ କରି ସ୍ମୃତି
ସୀମାହୀନ ବେଦନାରେ ଅଜଟି ପାଜଟି !
ଦୁର୍ବଳ ପାଗଳ କବି ତା'ର ପ୍ରତିଦାନ
କି ଅବା ପାରିବ ଦେଇ; ଜୀବନ ତମାମ
କିଛୁତ ପାରୁନି କରି ମୁହିଁ ତୁମ୍ଭ ପାଇଁ
ତୁମେ ମୋରେ ଶରଧା ରଖିତ ଅନାଇଁ !

— ପଞ୍ଚାନନ —

ଅମୃଲିପି

## ଦୁଃଖନାହିଁ —

ଏଇ ମହାପୃଥିବୀର କେଉଁ ଏକ କୋଣେ
ଏଠି ବିକଶିତ ହେମ ଅନନ୍ତ ସପନେ !
ମୁଁ ଦରଦ ଭବାଭନ ତୁମରେ କପାଇଁ
ଏତେ ଭଲ ପାଉଅଛୁ ଜାଣିପାରୁନାହିଁ !
ତାହାରୁ ଉଲିପା ଯାଏଁ ସମସ୍ତ ଭ୍ରମର
ମତେ ଏତେ ଭଲଲାଗେ । ସମସ୍ତ ମୋହରି —
ଦେହମନ ତୁମରେହିଁ କରି ସମର୍ପଣ
ଯେତେହିଁ ମୁହିଁ ଚଳିବାକୁ ଅନନ୍ତ ବନ୍ଧନ —
ଭ୍ରମ ଭୁଲେ, ସେତେହିଁ ଜନ୍ମଜନ୍ମାନ୍ତର ଧରି
ନିଅ ମହତ, ତାଙ୍କ ମତେ ଆପଣାର କରି,
ଆନନ୍ଦର ସୀମାହୀନ ପାରିବାରେ ମତେ
ଦିଅହେ ବୁଡ଼ାଇ ଏଇ ଧରାରେ ହନ୍ତେ;
ସୀମାହୀନ ଆନନ୍ଦର ଏକ ବିନ୍ଦୁ ପିଇ
ଦୁଃଖ ନାହିଁ ଦଣ୍ଡେମାତ୍ର ରହେ ଏଥି ଜୀଇ !

— ହୃଦ୍ୟାନବେ —

## ପ୍ରବାସ-ଯାତ୍ରା

ହେ ମୋର ତରୁଣୀ ବଧୂ, ତୁମର ଅନ୍ତର
କେମନ୍ତେ ମୋହର ପାଇଁ ହୁଏ କଲବଲ;
ସବୁ ମୁଁ ପାରୁଚ ଜାଣି ଗୋଟି ଗୋଟି କର
ଯାଉଚ ପ୍ରବାସ ଭୂଇଁ । କୁଟୀର ଅଦର
କେମନ୍ତେ ରହିବ ତମେ, ମସ୍ତିଷ୍କ ମୋହର
ପୀଡ଼ାଗ୍ରସ୍ତ, ମନ ପୁଣି ଦୁଃଖ ବିଷାଦର
ହୋଇଚ ଶିକାର ଏବେ । ଏ ସକଳ ଜାଣି
ଅନ୍ତରେ କି ଘୋର କଷ୍ଟ ପାଉଚ କଲ୍ୟାଣି !
କେତେ ଯେ ଅଶଙ୍କା ଜନ୍ମ କୋମଳ ପରାଣେ
ଜାଗିଉଠେ ବାରବାର, ମୁଁ ସବୁ ଏମାନେ
ନାହିଁ ବୁଝି, ଅନ୍ଧପରି ଚାଲିଯାଏ ଦୂରେ
ତୁମେ ଖାଲି ଚାହିଁ ରହ ବାଷ୍ପ-କଣ୍ଠେ ପୁରେ
ନେଇ ଢାଳି ଅଶ୍ରୁବିନ୍ଦୁ । ହାଇରେ ଜୀବନ !
କେଡ଼େ ମର୍ମନ୍ତୁଦ ନୁହେ ପ୍ରାଣର ଦହନ !!

## କାହିଁକି ?

କାହିଁକି ଗୋ ଲକ୍ଷ ନେବେ ସୃଷ୍ଟିର ମଝିରେ ?
ମଝିରୁହିଁ ଯିବାକୁ ହେବ ବିଶ୍ୱରାଜପଥେ
ସମସ୍ତ ବନ୍ଧନ ବାଧା ନଗଣି ନମାନି,
ସମସ୍ତର ଲାଗି ମୋର ଜୀବନ କଲ୍ୟାଣି !
ହୋଇଛି ନିର୍ମାଣ କେଉଁ ମହାସ୍ରଷ୍ଟା ହାତରେ,
ପୋଛ ଅଶ୍ରୁ ନେତ୍ରପ୍ରାନ୍ତୁ ଶୁଣ ମଝି ଥରେ
ମୁହିଁ ମହା ଧରଣୀର ବିରାଟ ଜୀବନ
ହସ ସଖି ! ଆନନ୍ଦରେ ଅଧୀର ଉନ୍ମନ—
ହୋଇ ଉଠେ, କ୍ଷମା ଦୁଃଖ କର !
ଦୁଏ ଘୂର୍ଣ୍ଣି, ରୋଗ ଦୁଃଖ କଷ୍ଟ ନିରନ୍ତର
ଦିନ ଦିନ ଧରି ମୋରେ କରୁ କଲବଲ
ମୋଲାଗି ଟିକିଏ ସେତେ ଫୁଟିବ ମଙ୍ଗଳ
ଧରଣୀର କେଉଁ ପ୍ରାନ୍ତେ, ଜଣକର ପାଇଁ,
ସାର୍ଥକ ଜୀବନ ମୋର ହୋଇବ ନାହିଁ ?

— ଅଠାନବେ —

ଅମ୍ଳଲିପି

## ଅନ୍ୱେଷଣ

ମତେ ସତେ ଖୋଜୁଥିବ ଦରିଦ୍ର କୁଟୀରେ,
ମୋ ସପନ ଦେଖୁଥିବ କୋଟି ଅଶ୍ରୁନୀରେ,
ମୋ ସ୍ମୃତି ମନାଉଥିବ, ଦିନ ଦିନ ଧରି
ନିଜକୁ ପଚାରୁଥିବ, ନିଜେ କେତେ ଭଲ,
"କି ଭଲ ଯେ ରହୁଥିବେ ? ଦୂରପଥେ କାହିଁ
ଟିକିଏ ବାରତା ହେଲେ ପାଉଛନ୍ତି ନାହିଁ
ଦେହକି ଖରାପ ହେଲା ? ଅବା ଭୁଲିଗଲେ
ଅଥବା ଚିରତରେ ଛାଡି ଦେଉଥିବେ ମୋରେ
ଅନ୍ତକାଳ ପହଞ୍ଚିବ । କିନ୍ତୁ ଜାଣିଲିନି
ରହିଛି ଅନ୍ତ୍ରଣୀ ପରି ମୁହିଁ ଅଭାଗିନୀ;
ନ ଆସୁ ଉତ୍ତର କିନ୍ତୁ, ସାତ ଦିନମାନେ
ରହିବ ପଡ଼ିଛି । ପ୍ରିୟ ମୋର ଥିବେ ଯେଉଁ ଥାନେ
ଜୀବନରେ ରହିଥାନ୍ତୁ ନିଶ୍ଚିନ୍ତେ ସୋହାଗେ,
ଆଖିବୁଜି ମୁହିଁ ନଇଁଯାଏ ତାଙ୍କ ଆଗେ ।"

— ଅନେସ୍ୱତ —

ଅନୁଲିପି

## ସିଦ୍ଧବାଣୀ—

ହେ ମୋର ପ୍ରାଣର ପତ୍ନୀ ଅଶ୍ରୁ ଛଳଛଳେ
ପଲ୍ଲବିତ କରପଦ୍ମ ରଖି ମୋର କରେ
ବାଷ୍ପରୁଦ୍ଧ-କଣ୍ଠେ ମତେ "ପ୍ରିୟତମ ମମ
ଦୁଃସ୍ଥ ଓ ଦୁର୍ବଳ ଏତେ ତୁମ ଦେହମନ
ଏକାଳରେ ଯାଉଅଛ ପ୍ରବାସ ଭୁବନେ
ଦେହ ଯଦି କଣ ହୋଇଯାଏ କେଉଁ କ୍ଷଣେ
କି କରିବି, କେମନ୍ତେ ମୁଁ ପାରିବି ସମ୍ଭାଳି
ଦେହ ବଳାବଳ ହେଲେ ଅସିବ ବାହାରି ।"
"ମନେରଖ ଅଟଗୋ ସତୀ ଅଟଗୋ ପତିବ୍ରତା !
ବିରାଟ ବିଶ୍ୱରେ ନାହିଁ କାହାର କ୍ଷମତା
—ରେଣୁମାନ, ତୁମରି ଏ ସୀମନ୍ତ ସିନ୍ଦୂର
ଜଳେ ଯା' ଜୀବନ୍ତ ହୋଇ, କରିଦେବ ଦୂର
ପୃଥିବୀର ଭବ ମୁହିଁ ସିଦ୍ଧ ମୋର ବାଣୀ
ଶ୍ରୀଯୁକ୍ତା ନିଶ୍ଚିତ ତୁମ୍ଭେ ଜାଣ ଗୋ କଲ୍ୟାଣି !

— ଶେଷ —

# କେ' କାହିଁ ରହିଲ !

ଶ୍ୟାମଳ ଶୋଲସ୍ତି ତଳେ ଦରିଦ୍ର କୁଟୀରେ
ରହିଲ ଗୋ ପ୍ରିୟତମା ଭୋଟି ଅଶ୍ରୁନୀରେ—
ମୋରେ ତୁମେ ଭାବୁଥିବ କେତେ ଦିନରାତ,
ସୀମାହୀନ ବେଦନାରେ ଭରିଥିବ ଚିତ୍ତ !
ହେଁ ଅଛି ମୋ ଅଦରର ଦୂରେ ଶାଣ୍ଡୁଘରେ
ଦୁଃଖେ ଯେବେ ଝରୁଥିବ ଲୁହ କେବେ ଥରେ
ମୋରେ ଭାଳି ଚହୁଥିବ ନନା ଠିକେ ଚାହିଁ
ଦେଖିବାକୁ ମୋରେ ଲବେ ଆସିଲେତ ନାହିଁ !
ମହେନ୍ଦ୍ର, ଶିଖସ୍ତି ତଟେ ନିଃସଙ୍ଗ ଜୀବନେ
ମୁଁ ଏଥି ରହିଲି ଏକା, ଏସବୁ ସ୍ମରିକଣ
ନୈସପ୍ରାନ୍ତୁ ଲୁହ ଢାଳି । ରହିଲ କେ' କାହିଁ
ଏଭଏ ରହୁଟେ ଖାଲି ସଭିଙ୍କି ଯେ ସ୍ମୃହିଁ
ମୁଡନେନ୍ଦ୍ର 'ବନ୍ଧୁସାଏ କେତେ ଅଶ୍ରୁହର
କା' ଲୁହ କେ ଦେଖିଲନ ବାଧେ ନିରନ୍ତର !

— ଶେଷ ଏକ —

ଅନ୍ତଲିପି

## ନୁହେ ଲଭିବାର—

ପଚାରିଲି ଦିନେ ମୁହିଁ ଖାଲି କୌତୂହଳେ
ଅଧର ଈଷତ ହାସେ, ଧରଣୀ ଉପରେ
ପ୍ରେମ କାଣ ? ହଠାତ ମୁଁ ପାଇଲି ଉତ୍ତର
ସେ କାନ୍ତ ଲଲିତ ଓଠୁ; "ମୁହିଁ ଯେ ତୁମ୍ଭର
ସବୁଦିନ ଚିରକାଳ ।" ସେ ଥିଲା ବାଣୀ
ମୋର ଯେବେ ମନେପଡେ ତାହାଙ୍କ କଥା
ଦାରିଦ୍ର କୁଟୀରେ ବସି ବେଳେ ବେଳେ ଥରେ
ସ୍ମରିହୁଏ ସେ ବାଣୀର ପ୍ରତ୍ୟେକ **ଅକ୍ଷର** !
ପ୍ରାଣ ପାଶେ ପ୍ରାଣର ଯେ ପୂର୍ଣ୍ଣ ସମର୍ପଣ,
ହୃଦ ସହ ହୃଦର ଯେ ମୋହନ ବନ୍ଧନ,
ଏ ଦୁହିଁଙ୍କ ମଧ୍ୟେ ଶିକ୍ଷା କିବା ଅଛି ତାହିଁ
ଯେତେ ସ୍ମରିହୁଏ ସେତେ ମିଠାଯାଏ ପାଇ ।
ପ୍ରେମେ ମୁହିଁ ମରି ହେବା ପାଉଁଶ ଅଙ୍ଗାର
ଏ ଶିକ୍ଷା ଥିଲା କିନ୍ତୁ ନୁହେ ଲଭିବାର !!

— ଶେଷ ଦୁଇ —

ଅଞ୍ଜଳି

# ଦୂର ଅତୀତର ଗୋଟିଏ ସ୍ମୃତି

ସେଇ ଗଛ ମୂଳ ତଳେ ସେ ବଣ ପାହାଡ଼େ
ବୁଲିବୁଲି ଆସେ ଯେବେ କେବେ ବାରେବାରେ
ଠିଆହୋଇ ନିମିଷକେ ସେ କୁଞ୍ଜ କାନନେ
ତୁମ କଥାଟିକୁ ସ୍ମରିହୁଏ ଏ ମରମେ !
କେଉଁଠି ରହିଲ ତମେ ମୋ ପରାଣ ସାଥି
ମୋ ଗୀତରେ ମିଶିଲନି ଆଉ ତୁମ ଗୀତ
ତୁମ ଓଠୁ ପଦେ ବାଣୀ ପ୍ରାଣ ବିମୋହନ,
ଶୁଣିବା ଜୀବନେ ମୋର ହେଲାକ ସପନ !
ଜୀବନ ସଂଗ୍ରାମେ ଯେବେ ନତଜାନୁ ହୋଇ
ପଡ଼ିଥିବ ନେତ୍ରୁ ଲୁହ ଝାଉଥିବ ବୋହି
କନକ ଅଙ୍ଗୁଳି ବୁଲି ନେଇ ନୀରଧାର
କିଏ ପୋଛିଦେବ ଦୁଃଖ ଜୀବନର ଜ୍ୱାଳା !
ଗୀତର ଉଚ୍ଛ୍ୱାସ ଭରି ଅନନ୍ତ ସେନେହେ
କିଏ ଗୋଳାହୋଇଯିବ ମୋର ମନେଦେହେ ?

— ଶେଖ ତନି —

ଅନୁଲିପି

## ଛାଡ଼ିହୁଏ ? ✓

ସମସ୍ତ ଅପେକ୍ଷା ପରେ ଅଜ କାମ୍ୟ ଗୃହେଁ !
ଅଜ କାମ୍ୟ ତାହାପରେ ଏତେବାର ଧାଏଁ ?
ଅଜ କାମ୍ୟ ଖୋଜିବୁଲେ ଥର ଥର କରି ?
ଅଜ କାମ୍ୟ ଏତେ ମାୟା ଉଠଇ ସଞ୍ଚରି
ତାହାପାଇଁ ? ମନ୍ତ୍ର ସବୁ ମୋଛି ଏକବାର
ଗଢ଼ିବି ଅପଣା ବାଟେ ନୂତନ ସଂସାର
ଯୋଜିବି ନୂତନ ଭବ । କିନ୍ତୁ ତାହାଁ ପାଇଁ
ଅଗକୁ ପଡ଼ୁନି ପାଦ, ଯେହେତୁ ତାହାଠାଇଁ
ରହିଛି ମୋ ଗୃହୁତଳ ସମ୍ପଦ ସକଳ !
ତାରେ ନପାଇଲେ ଯେହେତୁ ସମସ୍ତ ବିଫଳ !
ମୋ ହୃଦୟ ପ୍ରତିତନ୍ତ୍ରୀ କରିଛି ଅଚ୍ଛନ୍ନ
ଏ ମାଟି ଉପରେ ଯେହେତୁ ତାର ଦେହମନ !
ଏତେ ଅପଶାର କରି ଦେଖିବାର ପରେ
ଛାଡ଼ିଲେ କି ଛାଡ଼ିହୁଏ ଶତ ଜନ୍ମାନ୍ତରେ !

— ଶରେହ ସ୍ବୁବ —

ଅମ୍ଳାନ

## ପରାଜିତର ଗୌରବ

ସେଦିନ ପ୍ରଥମ କବି ପୃଥିବୀ ଉପରେ,
ପ୍ରିୟା ବୋଲି ଡାକିଲଇଁ ସଖି ! ମୁଁ ତୁମ୍ଭରେ
ପ୍ରଥମ ଚୁମ୍ବନ ଆଙ୍କି ସ୍ୱର୍ଣ୍ଣ-ଗଣ୍ଡେ ତବ,
କହିଲଇଁ ତୁମଠରୁଁ ବଳି କେ ଗୌରବ—
ମୋର ଅଛି ସୃଷ୍ଟି ତଳେ ? ହତଭାଗା କବି,
ତୁମଠାରୁଁ ବଡ଼କରି ଯାଏ ଅନୁଭବି !
କହିଥିଲି ପ୍ରିୟା ମୋର ! ଆଜି ମନେପଡେ,
"ମୁଁ ଯଦି ବିରାଟ ଏଡ଼େ ତୁମ ନୟନରେ,
ମୁଁ ଯଦି ସୁନ୍ଦର ଏଡ଼େ ତୁମେ ଅନୁଭବ,
ମୁଁ ଯଦି ତୁମରି ବକ୍ଷ ଏକାନ୍ତ ଗୌରବ,
ମୁଁ ଯଦି ତୁମରି ପ୍ରାଣ ସର୍ବସ୍ୱ ହେ ପ୍ରିୟ,
ତୁମେ କିମ୍ପା ହତଭାଗା ? ମତେ କହିଦିଅ ।"
ମାନିଥିଲି ପରାଜୟ ଗଉରବ ଭରେ,
କହିଥିଲି 'ମୁଁ ବିରାଟ ତୁମ ସ୍ପର୍ଶ ବଳେ ।'

— ଶଚୀ ପାଣି —

# ମାଟିର ମାୟା

ଯେ ଦିନ ବରଜି ଏଇ ପ୍ରିୟ ବସୁନ୍ଧରା
କେବଳ ଶୂନ୍ୟରେ ଦିନେ ଯିବି ମୁଁ ସଞ୍ଚରି,
ପ୍ରିୟଜନ ପରିଜନ ଆତ୍ମୀୟ ସୋଦର
କେ କାହିଁ ରହିବେ ଦୂରେ । ପୃଥିବୀ ଆଦର
ପାଇ ମୁଁ ପାରିବିନାହିଁ । ମୋର ପଥ ଘାଟ—
ପର୍ବତ ବନ ବିଲ୍ ନଦୀ ତୋଟା ପାଟ,
ଦିଗ୍‌ବଳୟ ତଟ ଶ୍ୟାମଘନ ଅରଣ୍ୟାନୀ,
ଶରତ, ବସନ୍ତ, ଗ୍ରୀଷ୍ମ ସନ୍ଧ୍ୟା ଦିବା ଯାମୀ,
ସବୁତ ରହିବ ଦୂରେ; ସବୁ ଛିନ୍ନ କରି
ଏ ମାଟିରୁ ବିଦାହେବି, ଅଶ୍ରୁ ଭରେ ଭରି
ନେବସ୍ୱର୍ଗ କାହିଁପାଇଁ ? କାହିଁପାଇଁ ମନ
ଏ ମାଟି ସହିତ ଲୋଡ଼େ ଶାଶ୍ୱତ ବନ୍ଧନ ?
ଯେ ମୋତେ ଯେବଣ ଦେଶେ ନେଇଯାଉ କାହିଁ
ଏ ମାଟିର ମୁହିଁ ଏଯେ ମାଟି ମୋହ ପାଇଁ ॥

— ଛନ୍ଦ ଛଅ —

# ଟିପ୍ପଣୀ

୨୨ ପୃଷ୍ଠା

ଉତ୍କଳ ଘରର ଗୋଟିଏ ମୁମୂର୍ଷୁ ବଳଦକୁ ଲକ୍ଷ୍ୟ କରାଯାଇଛି ।

୩୯ ପୃଷ୍ଠା

ହିନ୍ଦୁସ୍ଥାନ ଷ୍ଟାଣ୍ଡାର୍ଡରେ ପୂର୍ବ-ବଙ୍ଗରୁ ଆସିଥିବା ଗୋଟିଏ ବୁଭୁକ୍ଷୁ ବାଳିକାର ଶବକୁ ଦେଖି……

୪୮ ପୃଷ୍ଠା

କବି ଓଡ଼ିଶାର କୌଣସି ଶିକ୍ଷାନୁଷ୍ଠାନ ଛାଡ଼ି ଆସିବା ପରେ ସେଠାର ପ୍ରଧାନକର୍ତ୍ତାଙ୍କ କଠୋର ବ୍ୟବହାରରେ ତାଙ୍କର ଶିକ୍ଷକ ବନ୍ଧୁମାନେ ଜହ୍ନପୀଡ଼ିତ ହୋଇଥିଲେ ।

୪୯ ପୃଷ୍ଠା

ଓଡ଼ିଶାର କୌଣସି ଶିକ୍ଷାନୁଷ୍ଠାନରେ କବିଙ୍କର ଜଣେ ଶିକ୍ଷକ ବନ୍ଧୁ ସେ ଅନୁଷ୍ଠାନର ପ୍ରଧାନ କର୍ତ୍ତାଙ୍କ ଅନ୍ୟାୟ ବ୍ୟବହାରରେ ତୀବ୍ର ପ୍ରତିବାଦ କରି ତାଙ୍କ ବିଷଦୃଷ୍ଟିରେ ପଡ଼ିଥିଲେ ।

୫୦ ପୃଷ୍ଠା

୪୮ ପୃଷ୍ଠାର ଟୀକା ଦେଖ ।

୫୦ ପୃଷ୍ଠା

ଗୁରଣ୍ଡି ଅଞ୍ଚଳରେ କାମ୍ମ ଜାତିର ତେଲେଙ୍ଗା ଲୋକମାନେ ବାସ କରନ୍ତି ।

## ୭୫ ପୃଷ୍ଠା

କବି ଖଲ୍ଲିକୋଟ ହାଇସ୍କୁଲ ଛାଡ଼ି ପାରଳା ଅଞ୍ଚଳର ଗୁରଣ୍ଡି ସ୍କୁଲକୁ ଯିବାବେଳେ, ଖଲ୍ଲିକୋଟ ସ୍କୁଲର ପ୍ରଧାନ ପଣ୍ଡିତ ଶ୍ରୀ ଗୌରୀଶଙ୍କର ଅଗ୍ରଣୀ କବିଙ୍କୁ ବ୍ରହ୍ମପୁର ବସ୍‌ଷ୍ଟାଣ୍ଡ ପାଖରେ ବିଦାୟ ଦେଇ ସାଶ୍ରୁଲୋଚନରେ ଫେରିଥିଲେ ।

## ୭୬ ପୃଷ୍ଠା

କବି ଗୁରଣ୍ଡି ସ୍କୁଲରେ ରହିବାର କେତେଦିନ ପରେ ଖଲ୍ଲିକୋଟର ତାଙ୍କ ପ୍ରିୟ ଛାତ୍ରମାନଙ୍କୁ ବାହାରେ ଭେଟିଥିଲେ ।

## ୭୭ ପୃଷ୍ଠା

ଗୁରଣ୍ଡିରେ ଥିଲାବେଳେ ଲେଖା—କବିଙ୍କ ବନ୍ଧୁ ପଣ୍ଡିତ ଗୌରୀଶଙ୍କରଙ୍କୁ ଲକ୍ଷ୍ୟ କରାଯାଇଛି ।

## ୭୯ ପୃଷ୍ଠା

ତରୁଣ କବି ବିଶ୍ୱମ୍ଭର ଗୁରଣ୍ଡି ସ୍କୁଲରେ କବିଙ୍କର ଜଣେ ସହକର୍ମୀ ଶିକ୍ଷକ ।

## ୮୭ ପୃଷ୍ଠା

ଅଲମ୍, କବିଙ୍କର ଜଣେ ପ୍ରିୟ ଶିଷ୍ୟ—ଗୁରଣ୍ଡିରେ ଥିଲାବେଳେ କବିଙ୍କର ମାନସିକ ଓ ଶାରୀରିକ ଦୁର୍ବଳତା ଆସିଥିଲା ।



ଓଡ଼ିଶାର ସୁପ୍ରତିଷ୍ଠିତ ଯଶସ୍ୱୀ କବି

## ଶ୍ରୀଯୁକ୍ତ କୃଷ୍ଣଚନ୍ଦ୍ର ତ୍ରିପାଠୀ ଙ୍କର

### ଉଚ୍ଚକୋଟୀର କବିତା ଗ୍ରନ୍ଥ :—

୧ । ଅଦ୍ଭୁତ ... ଟ ୦ [illegible]

୨ । ଅଗ୍ନିମେଘ ... ଟ ୦ ୩୵

୩ । ମାଟିଦୀପ ... ... ଟ ୧ [illegible]

୪ । ଅସ୍ଥଲି ... ... ଟ ୧ [illegible]

୫ । ସାଗରର ସ୍ୱପ୍ନ (ଯନ୍ତ୍ରସ୍ଥ) ... ଟ ୧ [illegible]

ପ୍ରାପ୍ତିସ୍ଥାନ :—

କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର, କଟକ

ଦାସ ବ୍ରଦର୍ସ, ବ୍ରହ୍ମପୁର